# ରଥ ସପ୍ତକ

ଲେଖକ : ଚନ୍ଦ୍ରଶେଖର ରଥ

ପ୍ରକାଶକ : ମହାବୀର ପ୍ରକାଶନ
ପୁରୁଣା ବସ୍‌ଷ୍ଟାଣ୍ଡ ପାଖ, ଅଶୋକ ନଗର, ଭୁବନେଶ୍ୱର- ୯,
ମୋ : ୯୪୩୯୪୭୭୯୯୯

ଶୋଭନ ସଂସ୍କରଣ - ସରସ୍ୱତୀ ପୂଜା-୨୦୧୩
ଅଳଙ୍କରଣ : ବଳଦେବ ମହାରଥୀ, ମୋ : ୯୮୬୧୦୬୭୦୫୬
ପ୍ରଚ୍ଛଦ ଓ ସଜ୍ଜା : ସୁଧାଂଶୁ ସାମନ୍ତରାୟ, ମୋ : ୯୯୩୭୭୦୭୦୬୯

ଅକ୍ଷର ସଜ୍ଜା : ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ : ନିର୍ଭୀକ ପ୍ରିଣ୍ଟର୍ସ, ଶିଳ୍ପାଞ୍ଚଳ, ରସୁଲଗଡ, ଭୁବନେଶ୍ୱର-୭୫୧୦୧୦
ଫୋ : (୦୬୭୪) ୨୫୮୭୮୫୨
ମୂଲ୍ୟ : ୧୦୦ଟଙ୍କା

ISBN-81-88263-00-1

# ଅନୁକ୍ରମ

ନମୋ ନିଶ୍ଚିହ୍ନଲିଙ୍ଗାୟ
ନମୋ ପ୍ରଣବରୂପିଣେ ।
ଯାତ୍ରାୟାଃ ଲୀଳାୟତୀବ
ନ ଏକଦେଶଂ ବ୍ରହ୍ମଣେ ॥
ଜାଗ୍ରତୋ ନିର୍ନିମେଷାୟ
ଜଗତଃ ସାକ୍ଷୀରୂପିଣେ ।
ଅନନ୍ତ ଶୋଭମାନାୟ
ଅଖଣ୍ଡାନନ୍ଦ ହେତବେ ॥

# ⦿

ଅଞ୍ଜଳିବଦ୍ଧ ହୋଇ ମୋର ହାତଯୋଡ଼ିକ ଯଦି କଟାଳ କରନ୍ତି ଯେ, ସେମାନଙ୍କର ଚରମ ଅଭିଳାଷ ଚରିତାର୍ଥ କରିବାକୁ ସେମାନେ ପ୍ରଭୁର ଗରୁଡ଼ଖମ୍ବକୁ ଥରେ କୁଣ୍ଢାଇବେ; ଗୋଡ଼ଯୋଡ଼ିକ ଥାଇ କହନ୍ତି ଯେ, ଶରଧା ବାଲିରେ ଘଡ଼ିଏ ମାତ୍ର ଠିଆହେବେ ଏବଂ ଆଖିଯୋଡ଼ିକ ଅପଲକ ଶୂନ୍ୟକୁ ଚାହିଁ ଯାଚନା କରନ୍ତି ଯେ, ପ୍ରଭୁର ଚକାନୟନରେ ଥରେ ପଖାଳିହେବେ-ତେଣିକି ମୋର ଆଉ କ'ଣ ଆୟତ୍ତ ଥାଇପାରେ ? ମୋ ବଚନ ସତ୍ୟ, ସୁଧିଜନେ ! ମୋ ଅଙ୍ଗେ ଅଙ୍ଗେ ଉତ୍କଣ୍ଠା, ରୋମେ ରୋମେ ଉନ୍ମୁଖତା, ମୋର ଶାଖାରେ ଶାଖାରେ ଗୋଟିଏ ମାତ୍ର ଶ୍ୟାମଳ ସତ୍ୟ ପଲ୍ଲବିତ ! - ମୁଁ କ୍ଷେତ୍ର ଯିବି ସୁଧିଜନେ, ମୋତେ ବାଟ କାଢ଼ି ନେଇଯାଅ ! ସଂସାର, ହୁଗୁଳି ଯାଅ ମୋ ପାଦରୁ, ମୋତେ ମୁକ୍ତକର ! କର୍ମ-ଜଞ୍ଜାଳ ଖସିପଡ଼ ମୋ ହାତଯୋଡ଼ିକରୁ, ମୋତେ ସ୍ୱଚ୍ଛନ୍ଦ କର, ସହଜ କର ! ମୋ ଆଖିଯୋଡ଼ିକରୁ ପୋଛି ହୋଇଯାଉ ମୋହାଞ୍ଜନ । ମୋତେ ଦୃଷ୍ଟିଦିଅ । ହେ, ଦଶଦିଗପାଳ, ମୋତେ ଧରି ରଖ ! ଦେବତା, ଗନ୍ଧର୍ବ, ଯକ୍ଷରକ୍ଷାଦି ମୋତେ ବେଢ଼ିରହ । ହେ ମୋର ଅଗଣିତ ପିତୃପୁରୁଷ, ମୋ ପଛରେ ଠିଆହୁଅ ! ମୁଁ କ୍ଷେତ୍ରଯିବି । ମୁଁ କ୍ଷେତ୍ର ଯିବି !!

ଅଝଟ ଶିଶୁ ପରି ଯେ ଏଭଳି ରୋଦନ କରି ଜାଣେ, ସେ କବି । ସେ ମହାପୁରୁଷ । ସେ ଅବଶ୍ୟ କ୍ଷେତ୍ର ଯିବ । ତାକୁ କେହି ରୋଧିପାରିବେ ନାହିଁ । ତା' ସୂକ୍ଷ୍ମପୁରୁଷ ହୁଏତ ସର୍ବଦା କ୍ଷେତ୍ରବାସୀ । ତା'ର ଅବୟବଗୁଡ଼ିକୁ କେବଳ ଗଡ଼େଇନେବା କଥା । ସେଭଳି ଅନନ୍ୟଚେତା ପାଇଁ ସବୁ ସମ୍ଭବ । ତାକୁ ସିଂହଦ୍ୱାର ବାରଣ ହେଲେ ବଡ଼ଦାଣ୍ଡରେ ଥାଇ ସେ ତା'ର ଶ୍ରୀଫଳ ଅର୍ଘ୍ୟ ଟେକି ଦେଇପାରେ । ଜନେ କହନ୍ତି ଯେ ନୀଳଚକ୍ର ଉପରୁ ବିପୁଳ ଭୁଜ ବିସ୍ତାରକରି ପ୍ରଭୁ ତାହା ତୋଳିନିଏ । ଅଥବା ସାତଶ' ପଞ୍ଚାଶ କୋଶ ଦୂରରେ ଥାଇ ସେ ଅଳି କରିପାରେ ଏବଂ ସେ ଆସିବାଯାକେ

ପ୍ରଭୁ ନନ୍ଦିଘୋଷରେ ବିଜେକରି ରହିଥାନ୍ତି । ଝଲମଲ କରୁଥାନ୍ତି ମୁକୁତାର ଝରା । ଝଲୁଥାନ୍ତି ଚକାନୟନ; କିନ୍ତୁ ଘୁଞ୍ଚନ୍ତି ନାହିଁ । କାରଣ କବି ମହାପୁରୁଷ ଆସିନାହିଁ । ଭକ୍ତ ମହାପୁରୁଷ ଆସିନାହିଁ । ଭକ୍ତ-ବାନ୍ଧବର ବନ୍ଧୁ ଆସିନାହିଁ । ଘୁଞ୍ଚିବେ କିପରି ? ...ସୁଧିଜନେ କହନ୍ତି ଯେ ଏହା ଅଲୌକିକ ବ୍ୟାପାର । ଘେନାଘେନି ରସଘନ ବ୍ୟାପାର । ଏଠି ସେ ମହାର୍ଘ 'ପାଟଡ଼ୋର'ଟି କାହାର କହି ହେବନାହିଁ । କହି ହେବନାହିଁ ବେଦପ୍ରଥିତ ପୁରୁଷୋତ୍ତମ ସ୍ୱୟଂ ଆକୃଷ୍ଟ ହୋଇ ଏ ପୁରୀକୁ ପରିପୂର୍ଣ୍ଣ କରନ୍ତି ନା ପରମତୀର୍ଥ ଭକ୍ତଗଣ ଏ ସିନ୍ଧୁତୀରକୁ ଟାଣିହୋଇ ଆସି ଏ ଭୂଖଣ୍ଡର ରେଣୁଗୁଡ଼ିକୁ ତୀର୍ଥାୟିତ କରନ୍ତି ।

ଉଭୟ ସତ୍ୟ । ମହାଭାବ-ସମୃଦ୍ଧ ଓ ସୂକ୍ଷ୍ମାତିସୂକ୍ଷ୍ମ ଆବେଗ ଭୂମିରେ ଦିଗ ବାରିବା ସହଜ ନୁହେଁ । ବେଗ ବାରିବା ସହଜ ନୁହେଁ । ସ୍ଥିତି ଏବଂ ଗତିକୁ ପୃଥକ୍ କରିବା ମଧ ସହଜ ନୁହେଁ । ଯୁଗ ଯୁଗ ଧରି ଜିଜ୍ଞାସାର ଯୋଡ଼ିଏ ଆଖି ଆକାଶକୁ ଚାହିଁ ଚାହିଁ କ୍ଳାନ୍ତ ହେଲା ପରେ ପରମ ବିସ୍ମୟ ଏବଂ ବିଶ୍ୱାସରେ ଦିନେ କେରାଏ ପାଟଡ଼ୋର ଫିଙ୍ଗି ଦେଇଥିଲା ଅପ୍ରାକୃତ ଶୂନ୍ୟମଣ୍ଡଳକୁ । ଏ ଦିବ୍ୟବସ୍ତୁ ସେ ପାଇଲା କିପରି ଏବଂ କେଉଁଠୁ ପାଇଲା ତାହା ଏକ ରହସ୍ୟ । ତା'ର ସୃଷ୍ଟିଶୀଳ ଆତ୍ମକୀଟ ବୋଧହୁଏ ଅହରହ ନିଜ ରସ କ୍ଷରଣରେ କୌଣସି ଏକ ମାଧ୍ୟମ ସର୍ଜନା କଲା, ଯାହା ବଳରେ ଅରୂପକୁ ବାନ୍ଧିହେବ; ଅମୂର୍ତ୍ତ ଅପ୍ରକଟକୁ ଅନୁଭବ କରିହେବ । ଏ ଅଦ୍ଭୁତ ତନ୍ତୁଟି ପ୍ରେମ ଏବଂ ବିଶ୍ୱାସର ବିଶୁଦ୍ଧତମ ଉପାଦାନ । ଏଇ ସେହି ପାଟଡ଼ୋର ଯେଉଁଥିରୁ ଗୋଟିଏ କେରା ସେ ଫିଙ୍ଗିଦେଲା ଶୂନ୍ୟକୁ ଏବଂ ଚାହିଁରହିଲା ନିରବଚ୍ଛିନ୍ନ ପ୍ରତୀକ୍ଷାରେ । ସେ ପ୍ରତୀକ୍ଷା ଗଭୀର ଉଦ୍‌ବେଗମୟ, ଆତୁର ବେଦନାମୟ ଏକ ଲୋତକାପ୍ଳୁତ ତପସ୍ୟା । ଯୁଗାବ୍ଧି ବ୍ୟାପୀ ଅଖଣ୍ଡ ତପସ୍ୟା ! ଲକ୍ଷେ ଯୋଜନରେ ଥାଇ ଆକଣ୍ଠ-ମଗ୍ନମାନ ଗଜରାଜର ତପସ୍ୟା । ତା'ପରେ ପାଟଡ଼ୋରରେ ଅକସ୍ମାତ ଦିନେ ଟାଣ ଅନୁଭବ ହେଲା । ମହାଶୂନ୍ୟର କୌଣସି ଏକ ଅଜ୍ଞାତ କମ୍ପନରେ ତାହା ସ୍ପନ୍ଦିତ ହେଲା । ଅରୂପ ହୁଏତ ସ୍ୱଇଚ୍ଛାରେ ରସମୟ ହେଲା ଦ୍ରବୀଭୂତ ହେଲା ଏବଂ ହଠାତ୍ ପ୍ରକଟିତ ହେଲା ଅର୍ଦ୍ଧକାଶରେ । ତା' ଅଣ୍ଟାରେ ପ୍ରେମାଶ୍ରୁସିକ୍ତ ପ୍ରସ୍ଥ ପ୍ରସ୍ଥ ପାଟଡ଼ୋର । ଘନକୃଷ୍ଣ ମେଘ ଉହାଡ଼ରୁ ତା'ର ଚକିତ ଯୋଡ଼ିଏ ଆଖି ଖୋଜିଗଲା ସେ ଅଦ୍ଭୁତକର୍ମାକୁ, ଯେ ସୂର୍ଯ୍ୟ ଚନ୍ଦ୍ର ନ ଥିବା ରାଜ୍ୟରୁ ପରମଚେତନାକୁ ଟାଣିଆଣିଲା

ଫାଶପକେଇ । କିଏ ସେ ଉଦ୍ଦଣ୍ଡ ନର୍ତ୍ତନ କରୁଥିବା ଗୌରକାନ୍ତ ପୁରୁଷ ? କିଏ ସେ ମତ୍ତ ବଳରାମ ? ସେ ବନ୍ଧୁ ମହାନ୍ତି ? ପ୍ରେମରେ ଟାଣିହୋଇ ଆସିଥିବା ଭଗବାନଙ୍କ ପାଇଁ ଭକ୍ତ ଏକ ବିସ୍ମୟ ।

ଆଉ ଦିନେ ନିର୍ମମ ସଂସାରରେ ଦାନାକନା ସଂଘର୍ଷ ଭିତରେ କ୍ଷତବିକ୍ଷତ ହୋଇ ପଡ଼ିଥିଲାବେଳେ କେହି ଜଣେ ଉଠିବସିଲା ରାତିଅଧରେ । ପବନରେ ଏକ ଅଦ୍ଭୁତ ଶୀତଳ ସ୍ପର୍ଶ ତାକୁ ଖୁବ୍ ଆପଣାର ବୋଧହେଲା । ତା ଆଖିରୁ ଅବାରିତ ଲୁହ ଝରିଗଲା । ତା' ଭିତରେ ଗୋଟିଏ କୋମଳ ସୂର୍ଯ୍ୟ ପଦ୍ମ ପରି ଫୁଟିଗଲା । ସେ ଅନୁଭବ କଲା ଉତ୍କଣ୍ଠିତ ଉଚ୍ଚାଟ କେହି ହୁଏତ ତାକୁ ଡାକୁଛି ! ନୀରବରେ ଟାଣୁଛି ! ସେ ଟାଣି ହୋଇଗଲା ସେହି ଆଶ୍ଚର୍ଯ୍ୟବତ୍ ଦିଗରେ । ସାତଶ' ପଞ୍ଚାଶ କୋଶ ଭିଡ଼ି ହୋଇଗଲା । କୋମଳ ଅଥଚ ଅନୁପେକ୍ଷ୍ୟ ସେ ଆକର୍ଷଣରେ ପାଟଡ଼ୋରକୁ ଆଉଜି, ତା ଉପରେ ଓହଳିପଡ଼ି ସେ ଆସି ହର୍ଷ ଗଦ୍‌ଗଦ୍ ଠିଆହେଲା ବିପୁଳ ବଡ଼ଦାଣ୍ଡ ମଝିରେ ଏବଂ ଚାହିଁଲା ଅର୍ଦ୍ଧାକାଶକୁ । ତା'ର ପ୍ରତ୍ୟେକ ରୋମ ଉନ୍ମୁଖ ହୋଇ ଚାହିଁଲେ ନନ୍ଦିଘୋଷର ଗର୍ଭକୁ । ପାଟଡ଼ୋରରେ ଉତ୍କଟ ସଂସାରରୁ ଟାଣିହୋଇ ଆସିଥିବା ଏ ଭାଗ୍ୟବନ୍ତ ଭକ୍ତ ପାଇଁ ଭଗବାନ ଏକ ପ୍ରଗାଢ଼ ବିସ୍ମୟ । ...ଏହିପରି ଉଭୟ ପାକ୍ଷିକ ଏ ପାଟଡ଼ୋର । ଏହାର ଦୁଇଟି କେରା ସୂକ୍ଷ୍ମ ଅଦ୍ଭୁତ ଛନ୍ଦରେ ଆତଯାତ ହେଉଥାନ୍ତି, ଦୁଇଟି ସମାନ୍ତରାଳ ଧାରାରେ ପ୍ରେମ ଓ କରୁଣାର, ଭାବ ଓ ଭାବମୟତାର ରସ ସୃଷ୍ଟିକରି ।

"ମୋର ସଞ୍ଜ ହୋଇଗଲା । ମାଲିକେ, ମୋତେ ବାଟ ଛାଡ଼ିଦିଅ । ମୁଁ କ୍ଷେତ୍ର ଯିବି । ଏଇ ଜ୍ୟେଷ୍ଠକୁ ଚାରିକୋଡ଼ି ଭରିଗଲା । ଆଉ କ'ଣ ଗଛବୃଛ ହେବି କି ? ଏଇ ଥରକ ବାହୁଡ଼ିଗଲେ ଆଉ ନ ଦେଖିବି କଳାଶ୍ରୀମୁଖ । ଏ ଦିହକ ପାଇଁ ସରିଗଲା । ଏଥର ଝୁଲଣ ଗଲା । ଚନ୍ଦନ ଗଲା । ଏ ପୋଚା ଦେହ ଖଣ୍ଡ ବାଦ କଲା ମାଲିକେ, ଆସିପରିଲି ନାହିଁ । ମୋ ନେତ୍ର ପବିତ୍ର କରିବି । ଆତ୍ମାକୁ କାରଣ କରିବି । ମୁନ୍ଦାଏ ଟଙ୍କତୋରାଣି ପିଇଦେଲେ ତେଣିକ ମରିଯାନ୍ତି । ବଡ଼ଦାଣ୍ଡରେ ଆଡ଼ହୋଇ ଠିଆହେବି । ସେ ଭିଡ଼ ସମ୍ଭାଳିବାକୁ ଆଉ ବଳ ନାହିଁ । ସେଇଠି ଘଣ୍ଟ, ମର୍ଦ୍ଦଳ, କାହାଳୀ ବାଜୁଥିଲାବେଳେ ଦୁଲୁ ଦୁଲୁ ଚଳନ୍ତା ରଥରେ ସେ ମୋ ଆଡ଼ିକି ଟିକେ ଘୁଞ୍ଚିଆସନ୍ତା । ସେତିକି ଦେଖିଦେଲେ ମରିଯାନ୍ତି । ଏଇଟା ମୋ ବଡ଼ନାତିର

ସାନପୁଅ । ଲୋକନାଥଙ୍କ ଠେଇଁ ବାଳ ପକେଇବ । ମୁଁ ସେମିତି ଆସିଥିଲି ମୋ ଗୋସେଇଁ ବାପ ସାଙ୍ଗରେ । ଆମେ ଦିହେଁ ବାଇଶିପାହାଚରେ ଗଡ଼ିବୁ । ମୁଁ ପୁରଣା-ଗଡ଼ିଯିବି । ସେ ନୂଆ, ଏମିତି ଆଉ ଭିଛି କାଳ ଗଡୁଥିବ । ମୁଁ କ୍ଷେତ୍ର ଯିବି ମାଲିକେ, ମୋତେ ଛାଡ଼ି ଦିଅ । ମୁଁ କ'ଣ ଆଉଥରେ ଆସି କଟାଳ କରିବି କି ?"

"ତାଙ୍କେ ସବୁ ପାରଳାରୁ ଆସିଛନ୍ତି ସାଆନ୍ତେ ! ଆଉ ସେ ମାଇପି ଗଣ୍ଡାକ ଘୁମୁସର କୁଲାଡ଼ ଅଞ୍ଚଳର । ବାକିଯାକ ସବୁ ସାନଖେମୁଣ୍ଡି ଆଖପାଖ ପିତାତଳି, ଗଉଡ଼ଗାଁ, କୁକୁଡ଼ାଖଣ୍ଡି । ଆଉଯାକ ଆମ ଜଇପୁରୁ, ପାପଡ଼ାହାଣ୍ଡି, ଉମରକୋଟ । ଆମେ ସବୁ ମାଇକିନା ମର୍ଦ ମିଶି ପଞ୍ଚତିରିଶ ଜଣ । ଆସି ବରହମ୍‌ପୁର୍‌ଠେ ମିଶିଲୁ । ଆମେ ତୀର୍ଥକୁ ବାହାରିଛୁ, ବଡ଼ ଭିଡ଼ଭାଡ଼ରେ ଆସିଛୁ ସାଆନ୍ତେ ! ପାଞ୍ଚପଇସା ଖର୍ଚ୍ଚ କରିବାକୁ ଧଇର୍ଯ୍ୟ ନାହିଁ । ଚାଲି ଚାଲି ଚିଲିକା କୂଳେ କୂଳେ ଆସିଛୁ ପୁରୁସ୍ତମ, ଥରଟେ ଦେଖିବୁ ଜଗନ୍ନାଥଙ୍କୁ ବୋଲି । ପ୍ରଭୁର କେତେ ପତିଆରା କବିସୂର୍ଯ୍ୟେ ବୋଲିଛନ୍ତି । ବଡ଼ ଗହଳି ଗୁରାଳି ଭିତରେ ଡେମ୍ପନାଗରା ବାଜୁଥିବ । ଛତ୍ର ଚାମର ଟେକିଥିବେ । ବାଇଦ ବଡ଼କାଠ ବାଜୁଥିବ । ସେ ଭିତରେ ନିଳାଦ୍ରିସିଂହ ବିଜେହେବେ ନନ୍ଦିଘୋଷରେ । ସେ ପଟୁଆର ଟିକିଏ ଦେଖି ଏ ଚର୍ମ ଆଖି ପବିତ୍ର କରିବୁ । ସଂସାରରେ ଜନ୍ମ ଏକୁଟିଆ ଆଉ କିସ ସାଆନ୍ତେ ? ସମସ୍ତଙ୍କୁ ଘେନି ସିନା ସଂସାର ! ଏକୁଟିଆ ଗଳିଯିବାକୁ ସଜ ଥିଲେ ମହାପୁରୁଷଯାକ ଆମକୁ କାହିଁକି ଭିଡ଼ିଥାଆନ୍ତେ କହିଲେ ? ପରମ ପୁରୁଷ ନୀଳାଦ୍ରିରେ ବିଜେ କରିଛନ୍ତି; ନିଜେ ଦେଖିବା, ବନ୍ଧୁ ପରିଜନକୁ ଦେଖାଇବା । ସମସ୍ତଙ୍କୁ କଲ୍ୟାଣ ସିନା ଉଚିତ ! ଆମେ କ୍ଷେତ୍ର ଯିବୁ । ଆମକୁ ବାଟ ଛାଡ଼ିଦିଅ । 'କେହୁ ସରି କି, ପ୍ରଭୁପଣେ ନୀଳାଦ୍ରି କେଶରୀ କି । କେହୁ ସରି କି...।'"

"ମୁଇଁ ଆସିତେ ମନ୍ କଲେ କି ହେବ-ଠାକୁର ମନ୍‌କଲେ ସିନା ! କେତେଥର ବାହାରିଲି ପୁରୀ । ଏଇମାନେ ଯାଇତେ ଦେଲେ ନାହିଁ । କେବେ ସାନପୁଅର ବାହାଘର ତ କେବେ ନାତୁଣୀର ଭାତଖିଆ । ତୁଚ୍ଛା ମାୟାରେ ଭିଡ଼ିରଖିଲେ । ଶେଷକୁ ବିଧବା ହେଇଗଲି ସିନା ପ୍ରଭୁର ଦର୍ଶନ ପାଇଲିନି । କେନେ ମତେ ଏମ୍‌ତିନି ଏଇମାନେ ସାଧୁଛନ୍ତି । ହୁରି କଲି ମରିଯିବି ବୋଲି । ସବୁ ଆସି ଘେରିଗଲେ । ଏମାନେ ସବୁ ପରା ମୋର ରକ୍ତ । ଯଶିପୁର, ଚରୁଆଁ, ଚଁପୁଆ, ରାଇରଙ୍ଗପୁର,

ବାରିପଦା, ବାଲେଶ୍ୱର, ମେଦିନୀପୁର, ଚାଇଁବସା ଆଉ କେନ୍ଦୁଝର । ମତେ ଏଇମାନେ ଟେକିନେବେ କି ମୁଇଁ ଏମାନଙ୍କୁ ଟେକିନେବି ନୁହେଁ ଆମକୁ ଗୋଟେ ଫାଶରେ ଠାକୁର ଟେକିନେବ ତ ନେବ, ନ ହେଲେ ନାଇଁ । ମନ୍‌ଟା ଭାରି ଉତଲା ଧରିଲାଣି । ଦଦରା ଡଙ୍ଗା ବତାସୀରେ ଥରୁଛି, ହେଲେ ତ ଏପାର୍ ନ ହେଲେ ସେପାର୍ । ମହାପାତକୀ ମୁଁ । ମତେ ପାରିକର ଠାକୁର ! ଚାଲରେ ପିଲେ, ବାହାରିପଡ଼ । ମତେ ଆଉ ବେଳ ନାହିଁ । ମୁଁ କ୍ଷେତ୍ର ଯିବି ।"

"ଇ'ସଭେ ଆମର୍ ବାଟର୍ ଲୋକ୍ । ରେଢ଼ାଖୋଲ୍, ସମ୍ବଲପୁର୍, ସାଲେଭଟା, ତର୍ଭା ଆର୍ ଛିନ୍ ଛାନ୍ କଲାହାଣ୍ଡି ଭିତ୍‌ରେ ଧନେର୍ ଗାଁ । ଇ'ବାଟେ ବଲାଙ୍ଗେର୍, ସୋନପୁର, ବଉଦ୍, ଫୁଲବାନି ଆର୍ ସୁନ୍ଦରଗଡ଼ । ହେ ବାଟେ ଗଲାଯେ କାହିଁ, ରାଉର୍‌କେଲା ! ଆମେ ସଭେଁ ପୁରୀ ଯିମୁ । ଜଗନ୍ନାଥ ମହାପ୍ରୁକେ ଚମ୍ପା ଫୁଲ୍ ଚଢ଼ାମୁ । ପଦମ୍ ଫୁଲର୍ ମାଲା ପିନ୍ଧାମୁ । ଆମର ଘରେ ମହାପ୍ରୁ ଆଛେ । ଆମର ଘରମାନକୁ ସେ ଯାଇଛେ । ଆମେ ତା'ର ଘରକେ ଆସିଛୁଁ । ଆମେ କୀର୍ତ୍ତନ କର୍‌ମୁ । ରଥ୍ ଘିଚ୍‌ମୁ । ଆମେ ଜାନିଛୁ ଇ' ମହାପ୍ରୁ ବିଟ୍ ବିଟ୍ କଲିଆଟା ! ହେଲେ, ବଡ଼ା ଚିକନ୍ ଆର୍ ବଡ଼ା ସୁନ୍ଦର୍‌ଟା ! ଥରେ ମନ୍ ଲାଗ୍‌ଲେ ଆର୍ ଛାଡ଼େନାଇଁ । ବାଟ୍ କହିଦିଅ ଗୁରୁ, ଆମେ କ୍ଷେତ୍ର ଯିମୁ ।"

ମହେନ୍ଦ୍ରଗିରିଠାରୁ ମେଘାସନ, ଋଷିକୁଲ୍ୟାଠାରୁ ସୁବର୍ଣ୍ଣରେଖା ଏବଂ କୋଣାର୍କଠାରୁ ହୀରାକୁଦ-ଏ ସମଗ୍ର ଭୂମିରେ ପାଟଡ଼ୋର ବିଛେଇ ହୋଇ ରହିଛି । ସେଥିରେ ପଡ଼ି ଟାଣିହୋଇ ଆସୁଛନ୍ତି ନୀଳାଦ୍ରି କେନ୍ଦ୍ରକୁ ସହସ୍ର ସହସ୍ର ଅନୁଗତ ଭକ୍ତ । ଶତାବ୍ଦୀ ଶତାବ୍ଦୀ ଧରି ପୁରୁଷାନୁକ୍ରମେ ପ୍ରତ୍ୟେକ ପ୍ରାଣରେ ଗୋଟିଏ ମାତ୍ର ଆବେଦନ-ମୁଁ କ୍ଷେତ୍ର ଯିବି । ଏଠିକି ନ ଆସିଲେ ସତେ ବା ସେ ତା'ର ଆତ୍ମାକୁ ଚିହ୍ନିପାରୁନାହିଁ । ବିକଳ ହେଉଛି ଆର୍ତ୍ତ, ତୃଷାର୍ତ୍ତ ପକ୍ଷୀଟିଏ ପରି ।

ନୀଳାଦ୍ରି ଚୂଳରେ ନୂଆ ମେଘ ଟେକିଛି ଏବଂ ଦଶଦିଗରୁ କଳରବ କରି ପହଁଚି ଆସୁଛନ୍ତି ଅକଳନ୍ତି ତୃଷାର୍ତ୍ତ ଚାତକ । ବଙ୍ଗଭୂମିରୁ ଶତ ଶତ ଭକ୍ତପରିବାର ନବଦ୍ୱୀପରୁ ମଧୁ ସଞ୍ଚୟ କରି ଆସିଛନ୍ତି ମଧୁଚକ୍ରର ସନ୍ଧାନରେ । ଇଚ୍ଛା-ପଣ୍ଡା ଗୁରୁଙ୍କର ପା' ଲାଗିହେବେ । ଦର୍ଶନ କରିବେ ଜଗନ୍ନାଥେର୍ ଚାନ୍ଦ୍ ବଦନ୍ । ଗଭୀର ଆପଣାପଣରେ କେହି କେହି ସୁଶ୍ରୀ ବଧୂ ହୁଏତ କହିବେ- 'ଠାକୁର୍‌ଟି ବଡ଼ୋ ଭାଲେ-

କିନ୍ତୁ କି ବିଶ୍ରୀ !' ଆସିଛନ୍ତି ଆହାମିଆ ଜଗନ୍ନାଥେର ଦର୍ଶନ କରିବେ । ତାଙ୍କର ସୁମଧୁର ବିଳମ୍ବିତ କୀର୍ତ୍ତନରେ ନିବେଦନ କରିବେ ଆତ୍ମାର ଆକୁତି, ମେଘାଳୟ, ଅରୁଣାଚଳର ଗମ୍ଭୀର ପାର୍ବତ୍ୟ-ଭକ୍ତଗଣ ସତେ ବା ବୁଝିଯାଇଛନ୍ତି ଆତ୍ମୀୟ ପରି ଏ ନୀଳାଚଳର ଅଧିବାସୀଙ୍କୁ । ହିମାଳୟର ତରାଇ ଅଞ୍ଚଳରୁ ସେଗୁଡ଼ିକ ହେଲେ ଘଡ଼ଉଆଲି-ସରଳ, ନିଷ୍କପଟ, ଜଗଦୀଶ-ପ୍ରେମୀ ଭକ୍ତଗୁଡ଼ିଏ ! ହାତ ଧରାଧରି ହୋଇ, ବିଚ୍ଛିନ୍ନ ହୋଇଯିବାର ଏକାନ୍ତ ଭୟରେ, ଏକାସାଙ୍ଗରେ ଗୁଗୁମୁଣ୍ଡିଆ ଚାଲିଥିବା ଗୋଷ୍ଠୀଗୁଡ଼ିକ ଛତିଶଗଡ଼ୀ । ସଂଶ୍ଳିଷ୍ଟ ଶର୍କରାଖଣ୍ଡ ପରି ସେମାନଙ୍କର ମଧୁର ପ୍ରଭୁପ୍ରେମ ଓ ନିଷ୍ଠା । ପଣ୍ଡିମା, ଗୁର୍ଜରୀ, କଚ୍ଛୀ ଓ କର୍ଣ୍ଣାଟକୀ ସ୍ୱତନ୍ତ୍ର ସ୍ୱାଭିମାନରେ ବଡ଼ଦାଣ୍ଡକୁ ମଣ୍ଡନ କରିଛନ୍ତି । ଏ ବିପୁଳ କ୍ଷେତ୍ର ପରିପୂରିତ ହୋଇଛି ଭାରତ ଭୂମିର ଦୂରଦୂରାନ୍ତରୁ ଟାଣିହୋଇ ଆସିଥିବା ଆତୁର ତୃଷାର୍ତ୍ତ ଚାତକଙ୍କର କଳରବରେ । ଶ୍ରୀକ୍ଷେତ୍ରରେ ଚାରିଆଡୁ ସବୁ ଫାଙ୍କ, ଗଳି, କନ୍ଦି ଦେଇ ଝରିଆସୁଛି ଭକ୍ତି ଏବଂ ବିଶ୍ୱାସର ଅଫୁରନ୍ତ ଧାରା । ବିଭିନ୍ନ ଭାଷା, ଭାବ, ଭଙ୍ଗୀରେ ଏ ଧାରାରେ ପ୍ରତି ବିନ୍ଦୁରେ ପ୍ରତିଧ୍ୱନିତ ହେଉଛି ସେଇ ଗୋଟିଏ ଆକୁତି- 'ମୁଁ କ୍ଷେତ୍ର ଯିବି'।

ଏ ଆକୁତିରେ ଖଣ୍ଡିତ ବେଦନା ଝାସଦେବାକୁ ଚାହେଁ ପୂର୍ଣ୍ଣତାର ସମୁଦ୍ରରେ । ସଂସାର ଭିତରେ, ବନ୍ଧୁ ପରିବାର, ସୋଦର ଭିତରେ ଛାଣି ଯାହା ସେ ପାଇନାହିଁ, ସେହି ଅପରିମେୟ ଆପଣାପଣ ସେ ଖୋଜୁଛି ଏ କ୍ଷେତ୍ରରେ । ଖୋଜୁଛି ତା' ଆତ୍ମାର ବିପୁଳ ଉପାଦାନ । ସମଗ୍ର ଚାତକଟିର ବିନ୍ଦୁଏ ମାତ୍ର ତୃଷା । ସେ ଅଧୀର ଉଲ୍ଲାସରେ ଦୃଷ୍ଟି ନିବଦ୍ଧ ରଖିଛି ନୀଳାଚଳ ଚୂଳରେ । କେତେବେଳେ ଓହ୍ଲେଇ ଆସିବ ଏ ନବମୁଦିର ! ଦୃଷ୍ଟି ନିବଦ୍ଧ ରଖିଛି ଦେବାକୀର୍ଣ୍ଣ ସିଂହଦ୍ୱାର ଉପରେ ।

ଅମୃତ-କୁଣ୍ଡଳ ଦୋଳାୟିତ କରି ବଦ୍ଧାଞ୍ଜଳି ନମସ୍କାର-ମୁଦ୍ରାରେ ମନ୍ଦାର ପାଖୁଡ଼ା ପରି ଚହଟୁଥିବା ସେ ଦିବ୍ୟ ପୁରୁଷ ହେଉଛନ୍ତି ସୂର୍ଯ୍ୟ । ତାଙ୍କ ପାଖକୁ ରଜତଶଙ୍ଖ୍-ଶୁଭ୍ର ଶୀତଳ ମୂର୍ତ୍ତି ହେଉଛନ୍ତି ସୋମ । ଲୋହିତ, ଶ୍ୟାମଳ କନକାଦି ବର୍ଣ୍ଣର ଅନ୍ୟାନ ଗ୍ରହମାନେ ସେହିପରି ଯୋଡ଼ହସ୍ତ ଠିଆ ରହିଛନ୍ତି । ଇନ୍ଦ୍ର ଅଗ୍ନି ଯମାଦି ଦଶ ଦିକ୍‌ପାଳମାନେ ସସମ୍ଭ୍ରମେ ସ୍ତବଗାନ କରୁଛନ୍ତି। ଶିବଗଣଙ୍କ ଗହଣରେ କୈଳାସପତି ଏବଂ ପାଦଗାମୀ ହୋଇ ବେଦପତି ଅପେକ୍ଷା କରିଛନ୍ତି । ସାଶ୍ରୁଲୋଚନ ଭକ୍ତ ଏ ଅପୂର୍ବ ଦୃଶ୍ୟରେ ବିହ୍ୱଳିତ ହୋଇ ଡାକୁଛି- 'ହ ପ୍ରାଣପତି, ସିଂହାଦ୍ୱାରେ ଉଭା ହୋଇଛନ୍ତି

ଯତିପତି, ହେ ପ୍ରାଣପତି !' ଅନ୍ତତଃ ଏମାନଙ୍କ ଖାତିର୍‌ରେ ଓହ୍ଲେଇ ଆସ ପ୍ରଭୁ ! ନହେଲା ବା ମୋ ପାଇଁ ତୁମର ବିଚାର ନହେଲା !

କିନ୍ତୁ ଭକ୍ତର ସରଳ ପ୍ରେମ ଓ ସ୍ୱଚ୍ଛନ୍ଦ ସମର୍ପଣରେ ହିଁ ସେ ଅବତରଣ କରନ୍ତି । ମହାମିଳନର ପଥ ଏ ବଡ଼ଦାଣ୍ଡ ! ରୂପ, ରଙ୍ଗ, ଆକୃତି, ଭାଷା, ଭଙ୍ଗୀର ବୈଚିତ୍ର୍ୟମୟ ଏ ମାନବ-ସମୁଦ୍ରରେ ଗୋଟିଏ ମାତ୍ର ଭାବତରଙ୍ଗ ରଥାରୂଢ଼ ବାମନଙ୍କର ଚରଣ ସ୍ପର୍ଶ କରୁଛି । ଏ ବିଭିନ୍ନତା କେବଳ ବହୁ ବିଚିତ୍ର, ବହୁ ରଙ୍ଗ-ରଞ୍ଜିତ ଗୋଟିଏ ପରିଧେୟ । ତାକୁ ପରିଧାନ କରିଛନ୍ତି ସର୍ବତ୍ର ବିରାଜିତା ଭାଗବତୀ ଭକ୍ତି । ତାଙ୍କ ସମ୍ମୁଖରେ ଏକମାତ୍ର ଭାଗବତପୁରୁଷ ବିରାଜମାନ । ଏ ମିଳନ ଘନିଷ୍ଠ, ପାରସ୍ପରିକ । ଜଣକର ଲଲାଟରେ ପ୍ରଭୁର ଚନ୍ଦନ ଲାଞ୍ଛନ ଏବଂ ଅନ୍ୟ ଜଣକର ବିପୁଳ ଭୁଜ-ଯୁଗଳ ଚେଲାଞ୍ଚଳ ଆବୃତ ।

ମୁଁ ମଧ କ୍ଷେତ୍ର ଯିବି ସାଧୁଜନେ ! କିନ୍ତୁ ସେ ମହାର୍ଘ ପାଟଡ଼ୋର ପାଇଁ ମୋର ପୁଣ୍ୟଧନ ନାହିଁ । ଦୀନବାନ୍ଧବ ହରିଙ୍କୁ କହିବ- ଯଦି ସେ ଅହେତୁକୀ ଅନୁଗ୍ରହ କରି ଏକ-ପାକ୍ଷିକ ପାଟଡ଼ୋରଟିଏ ଲଗେଇ ଟାଣିନିଅନ୍ତି, ମୁଁ ଅବଶ୍ୟ ଯିବି । ମୁଁ କ୍ଷେତ୍ର ଯିବି !

ଗୋଡ଼ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା, ସତ ମୋ ବଚନ ।
ଜଗନ୍ନାଥଙ୍କ ଶରଧାବାଲି ଚାଲିବାକୁ ମୋ ମନ
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କ ଶରଧାବାଲି ନିତି ଚାଲୁଥିବି ।
ହାତ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା, ସତ ମୋ ବଚନ ।
ଜଗନ୍ନାଥଙ୍କର ଗରୁଡ଼ ଖୁମ୍ବ କୁଣ୍ଢାଇବାରେ ମୋ ମନ,
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କର ଗରୁଡ଼ ଖୁମ୍ବ ନିତି କୁଣ୍ଢାଉଥିବି ।
ତୁଣ୍ଡ ଗୋଟି ଥାଇ ବୋଇଲା
ସତ ମୋ ବଚନ ରାମା, ସତ ମୋ ବଚନ ।

ଜଗନ୍ନାଥଙ୍କର ବଗଡ଼ା ଅନ୍ନ ଖାଇବାକୁ ମୋ ମନ,
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କର ବଗଡ଼ା ଅନ୍ନ ନିତି ଖାଉଥିବି ।

ନାକ ଗୋଟି ଥାଇ ବୋଇଲା
ସତ ମୋ ବଚନ ରାମା, ସତ ମୋ ବଚନ ।
ଜଗନ୍ନାଥଙ୍କର ବାସନା ଭୋଗ ଶୁଙ୍ଘିବାରେ ମୋ ମନ,
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କର ବାସନା ଭୋଗ ନିତି ଶୁଙ୍ଘୁଥିବି ।

ଆଖି ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା, ସତ ମୋ ବଚନ ।
ଜଗନ୍ନାଥଙ୍କ ଚକାଡ଼ୋଳା ଦେଖିବାରେ ମୋ ମନ,
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କର କଳାଶୀମୁଖ ନିତି ଦେଖୁଥିବି ।

କାନ ଯୋଡ଼ିକ ଥାଇ ବୋଇଲେ
ସତ ମୋ ବଚନ ରାମା, ସତ ମୋ ବଚନ ।
ଜଗନ୍ନାଥଙ୍କର ଘଣ୍ଟ-ମାଦଳ ଶୁଣିବାରେ ମୋ ମନ,
ମୁଁ ତ କ୍ଷେତ୍ର ଯିବି -
ଜଗନ୍ନାଥଙ୍କର ଘଣ୍ଟ-ମାଦଳ ନିତି ଶୁଣୁଥିବି ।

□□□

⊙

ଆସିବା ହେଉ । ପାଦ ପଖାଳି ବିଜେ ହେବା ହେଉ । ଏ ସେଇ ବଡ଼ଦାଣ୍ଡ, ଭଗତେ, ଏଇଠି ଆଖି ଟେକି ଚାହିଁବା ହେଉ ।

ବିଶୁଦ୍ଧ ଶ୍ରୀଫଳ ପରି ଘନରସରେ ପରିପୂର୍ଣ୍ଣ ସେ ଯେଉଁ ଖର୍ବକାୟ, ଝାଳସରସର ମଣିଷଟି, ଅରୁଣ ଖମ୍ଭ ତଳକୁ ଗଳବସ୍ତ୍ର ହୋଇ ବାହୁ ପ୍ରସାରି ଠିଆ ହୋଇଛନ୍ତି, ଯାହାଙ୍କ ଆଖିରୁ ଛଳଛଳ ଅଶ୍ରୁ ଅନବରତ ଝରିଯାଉଛି, ସେ ହେଉଛନ୍ତି ଦାସ ପ୍ରଧାନ ଦାସିଆ ବାଉରି । ଭାବ ଗଦ୍‌ଗଦ୍ ବିହ୍ୱଳ ଅବସ୍ଥାରେ ସେ ଚାରିଆଡ଼କୁ ଫେରି ଚାହୁଁଛନ୍ତି । ତାଙ୍କ ଓଠ ଥରଥର, ହାତ ଥରଥର, ପାଦ ଥରଥର । ଫୁଟିଲା କଦମ୍ବ ପରି ଦେହସାରା କଣ୍ଟକିତ । – "ଏଡ଼େ ବଡ଼ ଦେଉଳର ଏଡ଼େ ବଡ଼ ଠାକୁର ! ତୁମ ବାଇଶି ପାହାଚ ଚଢ଼ି ଯିବାକୁ ତ' ବଳ ନାହିଁ ପ୍ରଭୁ ! ଅଯୋଗ୍ୟ ଅଛବର, ଛୁବ କାହିଁ, ସେ ପବିତ୍ର ପଥରକୁ ମାରା କରିଦେବ ? ଏ ବଡ଼ଦାଣ୍ଡ ମୋ ସ୍ୱର୍ଗ । ସୁଦାମାର ଖୁଦଖିଆ ଠାକୁର ! ଶବରୀର କୋଳିଖିଆ ଠାକୁର ! ଏ ନଡ଼ିଆଟି କ'ଣ ତୁମ ମନ ଲାଖି ନଜର ହେବ କି ? ଏ ଅଛବ ହାତରୁ କ'ଣ ଘେନା ହେବ ଏ ଶ୍ରୀଫଳ ?"

ଅଶ୍ରୁ, ଅଭିମାନ, ସମର୍ପଣର ତରଳ ଅମୃତାୟିତ ନୈବେଦ୍ୟରୂପୀ ସେ ମହାପୁରୁଷ ବିହ୍ୱଳ ହୋଇ ଦଶ ଦିଗକୁ ଚାହୁଁଛନ୍ତି । ଖୋଜୁଛନ୍ତି ସେ ମହାଶୂନ୍ୟକୁ, କେଉଁଠୁ ଅବା ସୁବିଶାଳ ଭୁଜ ନଇଁ ଆସୁଥିବ ପରା ! ସେ ଭାବଭୂମିରେ କାଳ ନାହିଁ, ବସ୍ତୁ ନାହିଁ । ଆଖିକୁ ଅଦୃଶ୍ୟ ସେ ରାଜ୍ୟ, ହୋ ଭଗତେ, ମାତ୍ର ସେ ଭାବକୁ ପ୍ରକଟ !!

ସାତଲହଡ଼ା ମଠରୁ ସୁସଜ୍ଜ ତୁଳସୀ ମଞ୍ଜରୀଗୁଡ଼ିଏ ଆଞ୍ଜୁଳାରେ ଧରି ସେ ଯେଉଁ ସରଳ, ପ୍ରଶାନ୍ତ ଶୁଚିମନ୍ତ ପୁରୁଷ ଆସୁଛନ୍ତି, ଯାହାଙ୍କର ଆଖିଯୋଡ଼ିକ ପଦ୍ମ ପାଖୁଡ଼ା ପରି ଢଳଢଳ, ଯେହୁ ପିନ୍ଧିଛନ୍ତି ଶୁକଳ ଅମ୍ଳାନ, ତୁଳସୀ ଚନ୍ଦନରେ ଯେହୁ ମହମହ ବାସୁଛନ୍ତି, ନବାକ୍ଷରୀ ଛନ୍ଦ ପରି ଯାହାଙ୍କ ବିଗ୍ରହ ମନୋରମ, ସେ ମହାତମା

## ⊙

ଆସିବା ହେଉ । ପାଦ ପଖାଳି ବିଜେ ହେବା ହେଉ । ଏ ସେଇ ବଡ଼ଦାଣ୍ଡ, ଭଗତେ, ଏଇଠି ଆଖି ଟେକି ଚାହିଁବା ହେଉ ।

ବିଶୁଦ୍ଧ ଶ୍ରୀଫଳ ପରି ଘନରସରେ ପରିପୂର୍ଣ୍ଣ ସେ ଯେଉଁ ଖର୍ବକାୟ, ଝାଳସରସର ମଣିଷଟି, ଅରୁଣ ଖମ୍ଭ ତଳକୁ ଗଳବସ୍ତ୍ର ହୋଇ ବାହୁ ପ୍ରସାରି ଠିଆ ହୋଇଛନ୍ତି, ଯାହାଙ୍କ ଆଖିରୁ ଛଳଛଳ ଅଶ୍ରୁ ଅନବରତ ଝରିଯାଉଛି, ସେ ହେଉଛନ୍ତି ଦାସ ପ୍ରଧାନ ଦାସିଆ ବାଉରି । ଭାବ ଗଦ୍‌ଗଦ୍ ବିହ୍ୱଳ ଅବସ୍ଥାରେ ସେ ଚାରିଆଡ଼କୁ ଫେରି ଚାହୁଁଛନ୍ତି । ତାଙ୍କ ଓଠ ଥରଥର, ହାତ ଥରଥର, ପାଦ ଥରଥର । ଫୁଟିଲା କଦମ୍ବ ପରି ଦେହସାରା କଣ୍ଟକିତ । – "ଏଡ଼େ ବଡ଼ ଦେଉଳର ଏଡ଼େ ବଡ଼ ଠାକୁର ! ତୁମ ବାଇଶି ପାହାଚ ଚଢ଼ି ଯିବାକୁ ତ' ବଳ ନାହିଁ ପ୍ରଭୁ ! ଅଯୋଗ୍ୟ ଅଛବର, ଛୁବ କାହିଁ, ସେ ପବିତ୍ର ପଥରକୁ ମାରା କରିଦେବ ? ଏ ବଡ଼ଦାଣ୍ଡ ମୋ ସ୍ୱର୍ଗ । ସୁଦାମାର ଖୁଦଖିଆ ଠାକୁର ! ଶବରୀର କୋଳିଖିଆ ଠାକୁର ! ଏ ନଡ଼ିଆଟି କ'ଣ ତୁମ ମନ ଲାଖି ନଜର ହେବ କି ? ଏ ଅଛବ ହାତରୁ କ'ଣ ଘେନା ହେବ ଏ ଶ୍ରୀଫଳ ?"

ଅଶ୍ରୁ, ଅଭିମାନ, ସମର୍ପଣର ତରଳ ଅମୃତାୟିତ ନୈବେଦ୍ୟରୂପୀ ସେ ମହାପୁରୁଷ ବିହ୍ୱଳ ହୋଇ ଦଶ ଦିଗକୁ ଚାହୁଁଛନ୍ତି । ଖୋଜୁଛନ୍ତି ସେ ମହାଶୂନ୍ୟକୁ, କେଉଁଠୁ ଅବା ସୁବିଶାଳ ଭୁଜ ନଇଁ ଆସୁଥିବ ପରା ! ସେ ଭାବଭୂମିରେ କାଳ ନାହିଁ, ବସ୍ତୁ ନାହିଁ । ଆଖିକୁ ଅଦୃଶ୍ୟ ସେ ରାଜ୍ୟ, ହୋ ଭଗତେ, ମାତ୍ର ସେ ଭାବକୁ ପ୍ରକଟ !!

ସାତଲହଡ଼ା ମଠରୁ ସୁସଜ୍ଜ ତୁଳସୀ ମଞ୍ଜରୀଗୁଡ଼ିଏ ଆଞ୍ଜୁଳାରେ ଧରି ସେ ଯେଉଁ ସରଳ, ପ୍ରଶାନ୍ତ ଶୁଚିମନ୍ତ ପୁରୁଷ ଆସୁଛନ୍ତି, ଯାହାଙ୍କର ଆଖିଯୋଡ଼ିକ ପଦ୍ମ ପାଖୁଡ଼ା ପରି ଢଳଢଳ, ଯେହୁ ପିନ୍ଧିଛନ୍ତି ଶୁକଳ ଅମ୍ଳାନ, ତୁଳସୀ ଚନ୍ଦନରେ ଯେହୁ ମହମହ ବାସୁଛନ୍ତି, ନବାକ୍ଷରୀ ଛନ୍ଦ ପରି ଯାହାଙ୍କ ବିଗ୍ରହ ମନୋରମ, ସେ ମହାତମା

ହେଉଛନ୍ତି ଭାଗବତ-ପୁରୁଷ ଜଗନ୍ନାଥ ଦାସ । ଜ୍ଞାନଭକ୍ତିର ଗଙ୍ଗା-ସାଗର ସଙ୍ଗମ ହେଉଛନ୍ତି ଏ ତୀର୍ଥରାଜ । ଏହାଙ୍କୁ ନମସ୍କାର ! ହୋ ଭଗତେ, ତୁମକୁ ନମସ୍କାର । ଦାସେ ଆସି ଭେଟୁଛନ୍ତି ଦାସିଆଙ୍କୁ ଚମକି ପଡୁଛନ୍ତି ବିସ୍ମୟରେ । ଗମ୍ଭୀରାରୁ କେବେ ବିଜେ ହେଲେ ପ୍ରଭୁ ? କାହିଁ ଛତିଶା ନିଯୋଗ, କାହିଁ ମର୍ଦ୍ଦଳ କାହାଳୀ ? ଏଇ ତ' ସେଇ ଅନାଦି ପରମକାରଣ । ଦାସିଆଙ୍କ ଆଖିରେ ତୁଳସୀମଣ୍ଡିତ ଠାକୁର ଉଭା ହୋଇ ଯାଉଛନ୍ତି । ଦେଉଳରୁ ଓହ୍ଲେଇ ଆସିଛନ୍ତି ଅଛବଙ୍କ ଦିଅଁ । ଚମକିଯାଉଛି ନୀଳାଚଳ ସେ ଆଚମ୍ବିତ ଦେବମୁହୂର୍ତ୍ତରେ । କୋଳାକୋଳି ହୋଇ ଏକାକାର ହୋଇଯାଉଛନ୍ତି ଦୁଇଜଣ ! "ତୁ ମାୟାପୁରୁଷ ଶ୍ରୀହରି, ମୋତେ ମୋହିଲୁ ଛଦ୍ମକରି । ହେ ପତିତପାବନ, ହେ ଦରିଦ୍ର ଦାମୋଦର ମିତ, ହେ ଅନନ୍ତ ବାସୁଦେବ ।" ଦାସଙ୍କ ଭାଗବତ କଣ୍ଠରେ ଅଖଣ୍ଡ କୀର୍ତ୍ତନ ଝରି ପଡୁଛି । ଝରିପଡୁଛି ଅଛଡ଼ା ତୁଳସୀମଞ୍ଜରୀ ଦାସିଆଙ୍କ ପଦଯୁଗଳରେ ! - "ମୋତେ ଛୁଅଁନା, ଛୁଅଁନା ଠାକୁର ! ମୁଁ ଅଛବ ! ଛୁଇଁଲେ ତୁମର ମହାସ୍ନାହାନ ହେବ । ତୁମେ ମୋତେ ଆଉ ଭଣ୍ଡୁଛ କାହିଁକି ? ତୁମେ ହିଁ ତ ଜଗନ୍ନାଥ । ଦାସ ବୋଲି ଛଦ୍ମ କରୁଛ ସିନା ! ମୁଁ ସିନା ଦାସାନୁଦାସ ଦାସିଆ ବାଉରି ! ଏ ଶ୍ରୀଫଳଟି ମୋର ସର୍ବସ୍ୱ ଠାକୁର ! ଏ ନଡ଼ିଆଟି ମୋ ପଞ୍ଚପ୍ରାଣ ! ଘେନା ହେଉ ଏ ଦରିଦ୍ରର ନୈବେଦ୍ୟ ! ମୁଁ କି ଜାଣେ ଭୋଗରାଗ, ପୂଜା ଆରାଧନା ! ମୁଁ ଅଜ୍ଞାନ, ଅଛବ ! ମୋତେ ଛୁଅଁନା ବଡ଼ଦେଉଳିଆ ଦିଅଁ । ଛୁଇଁଲ ଯଦି, ଆଉ ଛାଡ଼ି ଯାଅନାହିଁ, କହୁଛି ! ଛାଡ଼ିଗଲେ ମୁଁ ମରିଯିବିଟି ।" ଭାବରସରେ କୋଳାକୋଳି, ଭାବଭୂମିରେ ମିଳାମିଳି, ଅପୂର୍ବ, ଅଦ୍ଭୁତ ଏ ମିଳନ, ହୋ ଭଗତେ !

ତେଣେ, ଚାହଁ ଭଗତେ ! କାଶୀ ମିଶ୍ରଙ୍କ ଉଆସ ଆଡୁ ଗୋଳଚହଳ ପାଖେଇ ଆସୁଛି । ଦୁଇବାହୁ ଊର୍ଦ୍ଧ୍ୱକୁ ଟେକି ସାତ୍ତ୍ୱିକ ବିକାରରେ ଉନ୍ମତ୍ତ-ପ୍ରାୟ କେଶବାସ ଅସମ୍ଭାଳ ହୋଇ, ଶ୍ୱେତ କଳଭ ପରି ଲୀଳାୟିତ ଭଙ୍ଗୀରେ ଝୁଲିଝୁଲି ଯେ ଅବତରଣ କରୁଛନ୍ତି, ଯାହାଙ୍କ ଶ୍ରୀଅଙ୍ଗରୁ ପଦ୍ମକେଶରର ଗନ୍ଧ ବାହାରୁଛି, ସେ ହେଉଛନ୍ତି ଯୁଗପୁରୁଷ ଗୌରାଙ୍ଗ । ଧରଣୀ ମଣ୍ଡିଳା ପ୍ରାୟେ ଆସି ଉଭା ହେଉଛନ୍ତି ଅରୁଣ ଖମ୍ବ ପାରୁଶରେ । ଅଶ୍ରୁ ପୁଲକ ସ୍ୱେଦରେ ଦେବବିଗ୍ରହ ଶୋଭାବନ୍ତ ଦିଶୁଛନ୍ତି 'କୃଷ୍ଣ' ନାମ କେହି ଉଚ୍ଚାରଣ କରନାହିଁ ଭଗତେ, ଶୁଣିଲେ ପ୍ରଭୁ ମୂର୍ଚ୍ଛାଯିବେ । ପ୍ରେମର ରସଘନ ବିଗ୍ରହ

ଛୁଇଁଦେଲେ, ପାଷାଣ ତରଳିଯିବ । ଦ୍ରବୀଭୂତ ହେବ ନୀଳାଚଳ । ବାହୁ ପ୍ରସାରି ସେ ଖୋଜୁଛନ୍ତି ଆନ ଏକ ପ୍ରେମର ପ୍ରତିମାକୁ; କୋଳାଗ୍ରତ କରୁଛନ୍ତି 'ଅତିବଡ଼ି' । ତାଙ୍କୁ ଘେରି ବିହ୍ୱଳ ହୋଇ ନାଚୁଛନ୍ତି ଭକ୍ତଗଣ । ଗଜମୋତିର ହାର ପିନ୍ଧି ପାଟମୁକୁଟଭୂଷିତ ସେ ଦିବ୍ୟପୁରୁଷ ହେଉଛନ୍ତି ରାୟ ରାମାନନ୍ଦ । ତାଙ୍କ ପାଖକୁ ଲାଗି ନୃତ୍ୟ କରୁଛନ୍ତି ନିତ୍ୟାନନ୍ଦ । ତାଙ୍କର ଝୀନ ଉତ୍ତରୀ ମସୃଣ ଭୁଜଦଣ୍ଡରୁ ଖସିପଡୁଛି । ଚହଟିଯାଉଛି ମୃଗମଦର ଗନ୍ଧ ।

ସାତଶ' ପଞ୍ଚାଶ କୋଶ ଦୂରରେ ଥିଲା ପ୍ରାୟ, ନିଜକୁ ହୀନ ଯବନ ବୋଲି ମଣିଲା ପ୍ରାୟ, ଗଙ୍ଗାଜଳପରି ବଡ଼ଦାଣ୍ଡ ରେଣୁ ମୁଣ୍ଡରେ ସିଞ୍ଚି ସିଞ୍ଚି, ସରୁ ଗାମୁଛାଟିଏ ବେକରେ ପକାଇ ଶୀର୍ଣ୍ଣକାୟ ସେ ଯେଉଁ ଜଣକ କାନ୍ଦ କାନ୍ଦ ହୋଇ କରଛଡ଼ା ଦେଇ ଠିଆହେଉଛନ୍ତି, ସେ ତେମନ୍ତ ନୁହନ୍ତି ହୋ ଭଗତେ ! ସେ ହେଉଛନ୍ତି ପ୍ରଭୁଙ୍କ ଅଙ୍ଗଲାଗି ଭକ୍ତଶିରୋମଣି ମହାତ୍ମା ସାଲବେଗ । କର୍ପୂରମାଳଟିଏ ପ୍ରଭୁଙ୍କ ଭୁଜଦଣ୍ଡରେ ମଣ୍ଡିଦେବାକୁ ଇଚ୍ଛା । ଅରୁଣ ଖମ୍ବ ପାଖରେ ଆଡ଼ଘସା ଦେଇ ଠିଆହେଉଛନ୍ତି । ଲୁହରେ ଝରିଯାଉଛି ପ୍ରାଣର ନିବେଦନ । ସନ୍ତାପିତ ଜୀବନର ବହୁ ଆର୍ତ୍ତ ବିକଳ ମୁହୂର୍ତ୍ତର ପଦ୍ମଗୁଡ଼ିକ ତାଙ୍କୁ ଘେରି ରହିଛନ୍ତି । ସେ ଆତୁର ହୋଇ ଅପେକ୍ଷା କରିଛନ୍ତି ଏ ନୀଳ ପର୍ବତର ମତୁଆଲା ହାତୀକୁ । ପଦ୍ମବନର ବ୍ୟୂହ ଭେଦିବାକୁ ସେ କେମିତି ଅବଲୀଳାକ୍ରମେ ମାଡ଼ି ଆସିବ, ସେ ବିପୁଳ ବିକ୍ରମ ଦେଖିବାକୁ ଅପେକ୍ଷା କରିଛନ୍ତି । ସେ କୁଆଡ଼େ ଜାତିରେ ଯବନ ହୋ ଭଗତେ ! ଏ ବିମଳ ମୁକ୍ତାଫଳ ପରି ଝଟକୁଥିବା ବିଶୁଦ୍ଧ ଆତ୍ମା କୁଆଡ଼େ ଯବନ ! ଭକ୍ତଙ୍କ ଭାବଭୂମିରେ ତାଙ୍କୁ ସାଉଁଟି ନେଉଛନ୍ତି, ଗୌରାଙ୍ଗ-କୋଳେଇ ନେଉଛନ୍ତି ଜଗନ୍ନାଥ । ଆମେ ସମସ୍ତେ ଜାତିରେ ଯବନ, ହୋ ଭକ୍ତଚୂଡ଼ାମଣି, ଆମ୍ଭକୁ ଶ୍ରୀରଙ୍ଗାଚରଣ ଦେଖାଅ !

ଗେରୁଆ ଠେକା ଭିଡ଼ି, ଗେରୁଆ ଗାମୁଛାଟିଏ ବେହେରଣ ପକେଇ କଳା ମଚମଚ ବୁକୁ ଉପରକୁ ଦରପାଚିଲା ଦାଢ଼ି ଲମ୍ବେଇଦେଇ ଯଷ୍ଟି ଖଣ୍ଡିଏ ହାତରେ ଧରି ସେ ଯେଉଁ ବାଙ୍ଗରା ମଣିଷଟି ଥଙ୍ଗେଇଲା ପରି ବାଟ ବାରିବାରି ଆସୁଛନ୍ତି, ତାଙ୍କୁ ଛାମୁଛାଡ୍ କରି ଦଣ୍ଡବତ ହୁଅ ଭଗତେ । ପ୍ରାଣୀଙ୍କ ଅପ୍ରମିତ ଆରତ ସହି ନ ପାରି, ନିଜକୁ ନର୍କରେ ବିସର୍ଜି ଦେବାକୁ ଏ କାରୁଣିକ ସନ୍ଥକବି ଭୀମା ଭୋଇ ବାହୁ ଟୋଳି ବ୍ରହ୍ମ ନିରଞ୍ଜନଙ୍କୁ ଡାକୁଛନ୍ତି । ଡାକୁଛନ୍ତି ଠାକୁରଙ୍କୁ ଆଖି ଟୋଳି ଚାହିଁଦେବାକୁ,

କେମିତି ଏ ଅକଳନୀୟ ଯାତନାର ସମୁଦ୍ର ନୀଳାଚଳ ଦେହରେ ଲହଡ଼ି ଭାଙ୍ଗୁଛି । ଭକ୍ତ ଡାକୁଛନ୍ତି ନିରଞ୍ଜନ ପୁରୁଷଙ୍କୁ ଏ ଯନ୍ତ୍ରଣାରୁ ଉଦ୍ଧାର କରିବାକୁ । ସେ ଅନ୍ଧ ନୁହନ୍ତି ଭଗତେ, ସେ ହିଁ ଏ ଅନ୍ଧ ଜଗତର ଅନ୍ୟତମ ଚକ୍ଷୁଷ୍ମାନ୍ ମହାପୁରୁଷ । ସେ ଦେଖୁଛନ୍ତି ଅସୁମାରି ସୂର୍ଯ୍ୟଙ୍କ ସମାହାର ସତ୍ୟକୁ । ସେ କନ୍ଧ ବୋଲାନ୍ତି ସତ, ହେଲେ ଏ କବିକୁଳଚାନ୍ଦଙ୍କୁ ସେ କାଳିଆ ଠାକୁରଙ୍କ ଜ୍ଞାତି କହିଲେ ଊଣାକଥା ହେବ କି ? ସାରୂପ୍ୟ ଦେଖି ବୁଝିବା ହେଉ ଭଗତେ-ଯାଙ୍କୁ କୁଆଡ଼େ ଶ୍ରୀମନ୍ଦିର ବାରଣ ହୋଇଥିଲା । ତାଙ୍କ ଠାକୁରଙ୍କ ସିଂହଦ୍ୱାର ଉପରେ କୁଆଡ଼େ ତାଙ୍କୁ ନିର୍ଯାତନା ମିଳିଥିଲା । ଛାମୁଛାଡ଼ ହୋଇଯାଅ ଭଗତେ, ଏ ନିତ୍ୟନୀଳାଚଳବିହାରୀ ଜ୍ଞାତି ପରିବାରଙ୍କ ଆଗରେ ଠିଆହେବାକୁ ଆମେ ଅବା କିଏ ?

ସେ ଯେଉଁ ମହିମାନ୍ୱିତ ଯୋଗସିଦ୍ଧ ପୁରୁଷମାନେ ଗମ୍ଭୀର ମୁଦ୍ରାରେ ଏ ଆଡ଼କୁ ପାଖେଇ ଆସୁଛନ୍ତି ସେମାନେ ହେଉଛନ୍ତି ଜ୍ଞାନଗୁରୁ ଅଚ୍ୟୁତ, ଯଶୋବନ୍ତ ଏବଂ ଅନନ୍ତ । ତାଙ୍କୁ ଘେରି ରହିଛନ୍ତି ଅଗଣିତ ଭକ୍ତ । ପିଣ୍ଡବ୍ରହ୍ମାଣ୍ଡର ରହସ୍ୟ ତାଙ୍କୁ ଜଣା । ଶୂନ୍ୟପୁରୁଷ ନିରଞ୍ଜନଙ୍କୁ ସେ ପ୍ରତ୍ୟକ୍ଷ କରିଛନ୍ତି, ଭଗତେ ! ଆଡ଼ ହୋଇଯାଅ, ସେ ବିଜେ ହେବେ !

ହାତରେ ଚମ୍ପାମାଳଟିଏ ଧରି ଶୁକ୍ଳ ଉତ୍ତରୀରେ ଆବୃତ, ଚନ୍ଦନଚର୍ଚ୍ଚିତ ହୋଇ ରସରାଜଙ୍କ ଦର୍ଶନରେ ବିହ୍ୱଳ-ଅନ୍ତର ସେ ରସିକ-କବି ହେଉଛନ୍ତି କବିସୂର୍ଯ୍ୟ । ଭାବଛଳଛଳ ଆଖିରେ ତାଙ୍କର ପରିହାସର ଛଟା । ମଧୁର ଭର୍ତ୍ସନା କଲାବେଳେ ସେ ଆମକୁ ଛଳିଦିଅନ୍ତି ଭଗତେ ! ମାତ୍ର ସିଂହାସନ ଉପରେ ତାଙ୍କ ଆରାଧ୍ୟ ବସି ଟହଟହ ହସୁଥିବା ସେ ଦେଖୁଥାନ୍ତି । ମଜ୍ଜି ଥାନ୍ତି ଅପୂର୍ବ ରସରେ । ସଂଗୀତର ମଧୁର ଛନ୍ଦରେ ଯେତେ ଗାଳିଦେଲେ ମଧ ବଡ଼ଲୋକଙ୍କୁ ସୁହାଉଥିବା ପରା ! ତୁଣ୍ଡରେ ସିନା ଛଳ ବାକ୍ୟ, ଆଖିରେ କିନ୍ତୁ ଲୁହ, ପ୍ରାଣରେ ଆବେଗ-ଇଚ୍ଛା, ସେ ଚମ୍ପାମାଳିଟିକୁ ଠାକୁରଙ୍କ ମାଜଣା ବଢ଼ିବା ଉତାରେ ଚୂଳ ଉପରେ ଖଞ୍ଜି ଦିଅନ୍ତେ । କରଯୋଡ଼ ହୋଇ ଶ୍ରୀଛାମୁରେ କହନ୍ତେ, "ଭଲ ମନ୍ଦକୁ ମୋର ଅବା କିବା ଆୟତ୍ତ, ସାଆନ୍ତେ, ସବୁ ତୁମ ଇଚ୍ଛା ସିନା ! ଏଣିକି ରଖ ଅଥବା ନ ରଖ, ମୋର ଏକମାତ୍ର ଗତି ସେଇ ପତିତପାବନ ବାନା !"

ସେ ଯିଏ ଆସୁଛନ୍ତି, ତାଙ୍କ ଦେହରେ ଖଣ୍ଡିଏ ବୋଲି ଧୋବ ବେହରଣ,

ବେକରେ ତୁଳସୀର କଣ୍ଠି, କପାଳରେ ବୈଷ୍ଣବର ଚିତା, ତାଙ୍କ ଦେହସାରା କଦମ୍ବ ପରି ଟାଙ୍କୁରି ଉଠୁଛି, ଯମୁନା ପରି ଉଲ୍ଲସି, ଉଛୁଳି ଉଠୁଛନ୍ତି ମଞ୍ଜରୀ-ଭାବରେ-ସେ ତଦ୍‌ଗତ କବି ଗୋପାଳକୃଷ୍ଣ । ହାତରେ ଲୁଚେଇ ଧରିଛନ୍ତି ଖଣ୍ଡିଏ ମଲ୍ଲୀମାଳ । ଫୁଟିଆସୁଥିବା ଫୁଲ ଦାଉଦାଉ ହୀରା ପଗଡ଼ ପରି ଶୋଭା ପାଉଛନ୍ତି । ବାସ ଚହଟିଯାଉଛି ବଡ଼ଦାଣ୍ଡରୁ ବୈକୁଣ୍ଠଯାଏ । ତାଙ୍କର ଥରିଲା ଥରିଲା ଓଠ ଉପରକୁ ଲୁହର ଧାର ନଇଁ ଆସୁଛି । ସେଥିରେ ପଖାଳି ହୋଇ ଅସ୍ଫୁଟ ସ୍ୱର ଶୁଭୁଛି, "ମଲ୍ଲୀମାଳ ଶ୍ୟାମକୁ ଦେବି, ମନ ତୋଷିବି ।" ଏ ଘନିଷ୍ଠ ବ୍ୟାପାରରେ ସେ କାନେଇଲା ପରି, ଚମକିଲା ପରି, ଛାନିଆ ହେଲାପରି ଚାରିଆଡ଼କୁ ଚାହୁଁଛନ୍ତି, କାଳେ କିଶୋରୀ କଣ୍ଠରେ ତାଙ୍କୁ କେହି 'ଦାସୀ' ବୋଲି ଡାକିଦେବେ ପରା !

କମ୍ବୁ-କଟକରେ ନୀଳାଦ୍ରି ସିଂହଙ୍କୁ ନିଉଛାଳି ହେବାପାଇଁ ମଣିମାଣିକ୍ୟଖଚିତ ବିଚିତ୍ର କିରୀଟ କୁଣ୍ଡଳ, ଗଜମୁକ୍ତାର ଚାପସରି ଧରି ସମ୍ରାଟ ଭଳି, ସେ ଯେ ବିଜେ ହେଉଛନ୍ତି ସେ ହେଲେ ଅପୂର୍ବ ପଣ୍ଡିତ-କବି ରାଜର୍ଷି ଉପେନ୍ଦ୍ର । ଚନ୍ଦନ ଲାଗି ବେଳେ ଯୁଥିପୁଷ୍ପର ଧଣ୍ଡାମାଳ ଭେଟିଦେବେ କୋଟି-ବ୍ରହ୍ମାଣ୍ଡ ସୁନ୍ଦରଙ୍କୁ । ତାଙ୍କ ପାଖକୁ ଅଭିମନ୍ୟୁ ! ଭକ୍ତ-ଚିନ୍ତାମଣି ତାଙ୍କ ପାଇଁ ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରିଦିଅନ୍ତି । ତାଙ୍କ ଆଖି ଉପରେ ଖେଳା କରନ୍ତି ରାଧାମାଧବ । ହୋ; ବିଦଗ୍‌ଧ ଭଗତେ, ନିଉଛାଳି ହୁଅ ଏ ବୈଷ୍ଣବ ମହାପୁରୁଷଙ୍କୁ । ତାଙ୍କ ପାଖକୁ ରସଘନ ବିଗ୍ରହଙ୍କ ଚରିତ ସୁରଧୁନୀ ଯାହାଙ୍କ ପାଇଁ କଲ୍ଲୋଳିତ ହେଉଛନ୍ତି, ଯାହାଙ୍କ ରୂପ ସ୍ନିଗ୍ଧ, ଶୀତଳ କହ୍ଲାର ଫୁଲଟିଏ ପରି ସଦ୍ୟସ୍ନାତ-ସେ ହେଉଛନ୍ତି ଭାବସମ୍ପଦର ଅଧୀଶ୍ୱର କବି ଦୀନକୃଷ୍ଣ । ଅସଂଖ୍ୟ ଭାବାଳୁ ଭକ୍ତଙ୍କୁ ଅଶ୍ରୁଅଭିଷେକରେ ରାଜତିଳକ ଦେଇ ଦୈନନ୍ଦିନ ଯେ ରାଜା କରୁଛନ୍ତି, ସେ ନିଜେ କୁଆଡ଼େ ଦୀନ ଦରିଦ୍ର, ହୋ ଭଗତେ ! ଏ ବିଚିତ୍ର ଲୀଳାକୁ ପ୍ରଣିପାତ ହୁଅ । ଏ ଭାବବିନୋଦିଆ କବିକୁଳଙ୍କୁ ପ୍ରଣିପାତ ହୁଅ !

ବଳିଷ୍ଠ ଯୋଦ୍ଧାପରି ତ୍ରିକଚ୍ଛ ପିନ୍ଧି, ପ୍ରକାଣ୍ଡ ଝୁଡ଼ା ପକାଇ ଯେ ଅପ୍ରତିହତ ପଲାସି ଆସୁଛନ୍ତି, ଯାହାଙ୍କ ନିର୍ଭୀକ କପାଳ ଉପରେ ଗୋଳା ସିନ୍ଦୂର ଟୋପା ଦାଉଦାଉ ଜଳୁଛି, ଝଙ୍କଡ଼ରୁ ପୁରସ୍ତମ ଯେ ସ୍ୱଚ୍ଛନ୍ଦ ଗତି କରିପାରନ୍ତି, ସେ ହେଉଛନ୍ତି ଶୂଦ୍ରମୁନି ସାରୋଳା । ତାଙ୍କ କାବ୍ୟପ୍ରବାହର ଗଙ୍ଗା ଅବାଧ ଅବତରଣ କଲାବେଳେ ଶିଳ ଶାଳ ଛିଣ୍ଡିଯିବେ । କାହାର ଶକ୍ତି ଅଛି ତାଙ୍କୁ ଅବରୋଧ କରିବ ? ଭାଷା, ଭାବ, ଇତିହାସ,

ପୁରାଣ, କାହାରି ଶକ୍ତି ନାହିଁ ଏହାଙ୍କୁ ଆୟତ୍ତ କରି ରଖିବାକୁ । ସେ ଆସିଛନ୍ତି ନୀଳେନ୍ଦ୍ରୀ ଦର୍ଶନ ପାଇଁ । ନମସ୍କାର ହୋଇ ଆଡ଼ହୋଇଯାଅ ଭଗତେ ! ନ ହେଲେ ଏ ମତ୍ତମାତଙ୍ଗ ଚକଟି ଚାଲିଯିବା କିଛି ବିଚିତ୍ର ନୁହେଁ ।

ବଡ଼ଦାଣ୍ଡଟିକୁ ଅକସ୍ମାତ୍ ମଳୟ ସଂଚାରରେ ସୁରଭିତ କରି, ଲବଙ୍ଗଲତିକାର କୁଞ୍ଜଗୁଡ଼ିକୁ କୋକିଳକୂଜିତ କରି ସେ ଯେଉଁ ସ୍ନିଗ୍ଧ-ମଧୁର ରସସ୍ନାତ ଲଳିତ କବି ସ୍ମିରତଡ଼ାଗର ହଂସପରି ଭାସି ଆସୁଛନ୍ତି, ସେ ହେଲେ ଗୋସ୍ୱାମୀ ଜୟଦେବ । ରସରାଜଙ୍କୁ ସ୍ୱରସରେ ମୁଗ୍ଧ ବିଭୋର କରିପାରିଲା ଭଳି ଆଉ କେହି ନାହାନ୍ତି ଭଗତେ ! ସମସ୍ତେ ଆଡ଼ହୋଇଯାଅ ! ଥମିଯାଅ ! ଓଳଗି ହୋଇ ତୁନି ପଡ଼ିଯାଅ; ନ ହେଲେ ମଧୁର ଛନ୍ଦରେ ବିଭଙ୍ଗ ଆସିଯିବ । ପହୁଡ଼ ବେଳେ ଲକ୍ଷ୍ମୀଙ୍କ ପ୍ରିୟ ଛଡ଼ାମାଳ ମାଳତୀ ପରି ଏ ଗୋବିନ୍ଦ ଗୀତରୁ ଛନ୍ଦରସ ଆସ୍ୱାଦନ ନ କଲେ ଯୋଗେଶ୍ୱରଙ୍କୁ ପହୁଡ଼ ଲାଗିହେବ ନାହିଁ ।

ଉତ୍ତର ଆକାଶ ସାରା ହାଲୋଳମୟ । ସେଇ ଦିଗରୁ ମହାତ୍ମାମାନେ ଅବତରଣ କରୁଛନ୍ତି, ଦେଖିବା ହେଉ, ଭଗତେ ! ପିଙ୍ଗଳ ଜଟାମଣ୍ଡିତ ଆୟତ-ନେତ୍ରଧାରୀ, ବିଶାଳ-ବୋଦ୍ଧା ବ୍ୟାସଦେବ ଆସୁଛନ୍ତି, ପ୍ରଣିପାତ ହୁଅ । ଆସୁଛନ୍ତି ଶ୍ମଶ୍ରୁଳ, ଅଶ୍ରୁଳ, ପରମ କାରୁଣିକ ଋଷି ବାଲମିକ, ପ୍ରଣିପାତ ହୁଅ । ଆସୁଛନ୍ତି ଅତ୍ରି, ଅଙ୍ଗିରସ, ବଶିଷ୍ଠ ଏବଂ ଭୃଗୁ; ଶୁକ, ପରାଶର ଓ ସନତ୍ କୁମାର, ଯାଜ୍ଞବଲ୍କ୍ୟ ଏବଂ ଦୀର୍ଘତମା-ସାଷ୍ଟାଙ୍ଗ ଦଣ୍ଡବତ ହୋଇଯାଅ । ହିମାଳୟ ଶୁଭ୍ରଚୂଡ଼ା ଉପରୁ ଅଗଣିତ ଭାସ୍ୱର ପୁରୁଷମାନେ ଓହ୍ଲେଇ ଆସୁଛନ୍ତି !! 'ଆସ ହେ ପିତୃଲୋକେ ! ଆଲୁଏ ଆସି ଆଲୁଏ ଯାଅ' । ଆଲୋକିତ କର ଏ ପୃଥିବୀକୁ ! ଏମାନଙ୍କ ଆଲୁଅରେ ସ୍ନାହାନ କରିପକାଅ ହୋ ଭଗତେ, ଧୋଇ ହୋଇଯାଅ !

ନିକଟତମ ପିତୃପୁରୁଷ ଛାଇ ଭଳି ଆମ ଗହଣରେ ପଶିଆସୁଛନ୍ତି । ହେଇ ସେ ଜଣକ ଯାହାଙ୍କର ଆଖିଯୋଡ଼ିକ ଗ୍ରହ ନକ୍ଷତ୍ର ରାଜ୍ୟରେ ବିଚରଣ କରି କରି କ୍ଳାନ୍ତ; ରୋଗାକ୍ରାନ୍ତ ଶରୀରଟି ତପଃକ୍ଲିଷ୍ଟ, ଶୀର୍ଣ୍ଣ, ଯାହାଙ୍କର ଏକମାତ୍ର ଧେୟ ନୀଳାଚଳନିବାସୀ, ଜଗଦାନନ୍ଦକନ୍ଦ; ସେ ହେଉଛନ୍ତି ପଠାଣି ସାଆନ୍ତେ ! ହାତେ ଉଞ୍ଚ ବେକ ଉପରକୁ ଆମ୍ବଟାକୁଆ ପରି ଥୋଡ଼ି, ଠାକୁଆ ଗାଲ, ଆଉ ସେ ଟାହୁଲିଆ ଆମୋଦିଆ ଆଖିଯୋଡ଼ିକୁ ଚିହ୍ନିବା ହେଉ ଭଗତେ ! ସେ ହେଲେ ବ୍ୟାସକବି

ଫକୀରମୋହନ । ଆର ଜଣକ ଚିଲିକା ଚନ୍ଦ୍ରଭାଗା ପରିକ୍ରମା କରି ଫେରିଛନ୍ତି । ଶୀର୍ଣ୍ଣ ବପୁ ତାଙ୍କର ପାଷାଣ ପିହିତ ହୋଇ ସୁଦ୍ଧା ଭିନ୍ନ ଉପାଦାନରେ ଗଢ଼ା ହୋଇଥିବାରୁ ସେ କବିବର ଯୁଗନ୍ଧର ଅଟନ୍ତି । ତାଙ୍କ ପାଖକୁ ଫୁଟିଲା ପଦ୍ମପରି ବିକଶୁଛନ୍ତି ଦରିଦ୍ରତା ପଙ୍କ ଭିତରୁ ସ୍ୱଭାବ କବି ଗଙ୍ଗାଧର । ସେ ଯେଉଁ ଖର୍ବ ମଣିଷଟି ଲୁହରେ ବୁକୁ ତିନ୍ତାଇ ଛଳଛଳ ଆଖିରେ ବଡ଼ଦାଣ୍ଡସାରା ଖୋଜିଯାଉଛନ୍ତି ବ୍ରାହ୍ମଣୀର ଆଷାଢ଼ ବନ୍ୟାରେ ପୁତ୍ରଦାରା ହରାଇଥିବା କୌଣସି ମୂକ ଅନାଥଟିକୁ, ଯେ ଆନ ଦୁଃଖରେ ଅଶ୍ରୁବନ୍ୟାରେ ଗାଧୋଉଛନ୍ତି, ନାରାୟଣଙ୍କୁ ନେତାରୂପେ ମାନିଥିବା ସେ କାନ୍ଦୁରା ମଣିଷଟି ହେଉଛନ୍ତି ପୁଣ୍ୟଶ୍ଳୋକ ଉତ୍କଳମଣି । ଶୁଭ୍ରପଗଡ଼ିମଣ୍ଡିତ ହୋଇ ସେ ଯେଉଁ ଶାଣିତ ଚରିତ୍ରଟି ଝଟକୁଛନ୍ତି, ଦୁଃଖରେ-ଅଭିମାନରେ, ଖୋଜୁଛନ୍ତି ମାଆକୁ, ଡାକୁଛନ୍ତି ଭାଇକୁ-ପାଇଲେ ଟୋଳି ନେଇଯାଆନ୍ତେ ପରା-ସେ ହେଉଛନ୍ତି ମଧୁସୂଦନ ଦାସ । ଏମାନଙ୍କ ଆଖିରେ ଥରେ ଏ ବଡ଼ଦାଣ୍ଡର ଏମୁଣ୍ଡରୁ ସେମୁଣ୍ଡଯାଏଁ ଚାହିଁଯାଅ ଭଗତେ ! ଝାଳ, ଧୂଳି ଜୁଡୁବୁଡୁ ଏ ସହସ୍ର ସହସ୍ର ଲବଣାକ୍ତ ଭକ୍ତ ପରିବାରକୁ ଚାହିଁଯାଅ । ଯୁଗଯୁଗ ଧରି ଏଇମାନେ ହିଁ ଆସୁଥିବେ । ଏଇମାନଙ୍କୁ ସେ ଉଠାଉଥାଏ ଏବଂ ପକାଉଥାଏ । ଏଇମାନଙ୍କ ପାଇଁ ପହଣ୍ଡି ବିଜୟ; ଏମାନଙ୍କ ପାଇଁ ଘୋଷଯାତ୍ରା । ଏମାନଙ୍କ ପଦରଜ ଆମ୍ଭଙ୍କୁ ଦିଅ ଭଗତେ, ଜୀବନ କୃତାର୍ଥ କରିବୁ ।

ଦକ୍ଷିଣ ଦିଶାକୁ ଏବେ ଚାହିଁବା ହୁଅନ୍ତୁ । ହୋମାଗ୍ନି ପରି ପୀତାଭ ଦୀପ୍ତି ଭିତରେ ଆସୁଛନ୍ତି ଯୁଗପୁରୁଷ ଆଚାର୍ଯ୍ୟମାନେ । ପ୍ରସନ୍ନ ଗମ୍ଭୀର ମୁଦ୍ରାରେ ଦଣ୍ଡ ଧାରଣ କରି ଅରୁଣବର୍ଣ୍ଣର ଉତ୍ତରୀ ଭିତରେ ବିଶୁଦ୍ଧ କାଞ୍ଚନ ପରି ଯେ ଝଟକୁଛନ୍ତି, ସେ ହେଉଛନ୍ତି ଷଣ୍ମତ-ସଂସ୍ଥାପକ ମହାମତି ଆଚାର୍ଯ୍ୟ ଶଙ୍କର । ତାଙ୍କ ପାଖକୁ ନିର୍ଧୂମ ଅଗ୍ନି ପରି ରାମାନୁଜ, ନିମ୍ବାର୍କ, ମାଧ୍ୱ, ବଲ୍ଲଭ । ଜ୍ଞାନ-ସୁରଧୁନୀର ଶାଖାୟିତ ଅସଂଖ୍ୟ ସ୍ରୋତ । ଆସୁଛନ୍ତି ଦୀପ୍ତିମନ୍ତ ଦୟାନନ୍ଦ ସରସ୍ୱତୀ ଏବଂ ଶାୟଣାଚାର୍ଯ୍ୟଙ୍କ ଗହଣରେ ଯାସ୍କ, ମମ୍ମଟ ଓ ପାଣିନୀ । ଆସୁଛନ୍ତି ବିଶୁଦ୍ଧାଭକ୍ତିରୂପିଣୀ ମୀରା ଏବଂ ମାନସହଂସ କବି ଗୋସ୍ୱାମୀ ତୁଳସୀ ଦାସ । ଏମାନେ ସମସ୍ତେ ଏକେ ଏକେ ତୀର୍ଥ-ସମୁଦ୍ର ହୋ ଭଗତେ, ତାଙ୍କୁ ପ୍ରଣିପାତ ହୁଅ । ଆସୁଛନ୍ତି ଯୁଗାବତାରୀ ଜ୍ଞାନଗୁରୁମାନେ । ଦୃପ୍ତ

ସିଂହପରି ସେ ଅଖଣ୍ଡ ସନ୍ନ୍ୟାସୀ ହେଉଛନ୍ତି ସ୍ୱାମୀଜୀ । ତାଙ୍କ ପାଖକୁ ସହଜ ସମାଧି-ସିଦ୍ଧ ମହାପୁରୁଷ ଭଗବାନ୍ ରାମକୃଷ୍ଣ । କନକକାନ୍ତ ସେ ଯୁଗପୁରୁଷ ହେଉଛନ୍ତି ମହାଯୋଗୀ ଶ୍ରୀ ଅରବିନ୍ଦ । ଏମାନେ ଶରଣ-ପଞ୍ଜର ପରମାଶ୍ରୟ ଗୁରକୁଳ । ଏମାନଙ୍କ କୃପାବିନା ଭାସିଯିବା ହେ। ଭଗତେ ! ଏଇମାନେ ମନକଲେ କୂଳରେ ଲଗାଇ ଦେଇ ପାରନ୍ତି ।

ହେଇ, ପୂର୍ବଦିଗରେ ସମସ୍ତ ଦେବତା ସୂର୍ଯ୍ୟଙ୍କୁ ଆଡ଼କରି ଉଠି ଆସୁଛନ୍ତି । ସେ ହିରଣ୍ମୟ ଜ୍ୟୋତିପୁରୁଷ ହେଉଛନ୍ତି ଇନ୍ଦ୍ରଦେବ । ତାଙ୍କ ଗହଣରେ ଅଗ୍ନି, ବରୁଣ, କୁବେର ଏବଂ ମରୁତ୍‌ଗଣ ଶୋଭମାନ ଦିଶୁଛନ୍ତି । ଦୂରରୁ ଦୁନ୍ଦୁଭିର ଗୁରୁ ଗୁରୁ ନିନାଦରେ ମାଙ୍ଗଳିକ ଶୁଭିଯାଉଛି । ଏକଦା ଯକ୍ଷ ରୂପରେ ଯେ ସେମାନଙ୍କୁ ଧର୍ମଶାସିତ କରିଥିଲେ ସେଇ ଅବ୍ୟକ୍ତଙ୍କ ଦର୍ଶନ ପାଇଁ ଏମାନେ ଆସିଛନ୍ତି । ଶହ ଶହ ସୂର୍ଯ୍ୟ ଏକାଠି ଉଦିତହେବାର ଏ ଅପରୂପ ଶୋଭାକୁ ନମସ୍କାର ହୁଅ ଭଗତେ ! ହିମାଦ୍ରି ପରି ବିପୁଳ ବିଶଦ ଶୋଭାମୟ ପରମ ପବିତ୍ର ଦେବାଧିଦେବ ଆସିଛନ୍ତି ଶିବଗଣଙ୍କ ଗହଣରେ । ବିଶୁଦ୍ଧ ଅରୁଣାଭା ବିକୀର୍ଣ୍ଣ କରି ବେଦମାତାଙ୍କୁ ବକ୍ଷରେ ଧାରଣ କରି ଉଦିତ ହୋଇଛନ୍ତି ବ୍ରହ୍ମା । ସାମଗାନର କମ୍ପନରେ ସୃଷ୍ଟି ହୋଇଯାଉଛି ଅସଂଖ୍ୟ ତାରକା, କୁସୁମିତ ହୋଇଉଠୁଛି ସ୍ୱର୍ଗଭୂମି । ଉଜ୍ୱଳ ତମାଳ ଶୋଭାରେ ଯେଉଁଠି ସୁବର୍ଣ୍ଣ କେୟୂର କିରୀଟର ଦୀପ୍ତି ସଂଯୁକ୍ତ ହୋଇ ଦଶଦିଗ ଭାସ୍ୱର ହୋଇ ଉଠୁଛି ସେ ହେଉଛନ୍ତି ପ୍ରଥମ ଆଦିତ୍ୟ ବିଷ୍ଣୁ । ଉଦ୍ଭାସିତ ହୋଇଛନ୍ତି ହଂସବାହିନୀ ସରସ୍ୱତୀ, କନକବର୍ଣ୍ଣା ଜଗଜ୍ଜନନୀ ଉମା ଏବଂ ସ୍ନିଗ୍ଧ ସୁଷମାମୟୀ ମହାଲକ୍ଷ୍ମୀ । ଏ ଅପୂର୍ବ ଦେବସମାଗମରେ ବିହ୍ୱଳ, ବିମୂଢ଼ ଚିତ୍ତବୃତ୍ତିକୁ ଧାରଣ କରିବାକୁ ଗୁରୁସ୍ମରଣ କର ଭଗତେ, ନ ହେଲେ ଏଠି ଅସ୍ମିତା ହଜିଯିବ । ବିଲୁପ୍ତ ହୋଇଯିବ ସତ୍ତାବିନ୍ଦୁ । ଗୁରୁଙ୍କୁ ପ୍ରଣିପାତ ହୁଅ ଭଗତେ, ଏ ମହନୀୟ ଅକଳ୍ପନୀୟ ଦୃଶ୍ୟକୁ ସସମ୍ଭ୍ରମେ ପ୍ରଣିପାତ ହୁଅ ।

ବୁଲିଚାହଁ ଭଗତେ ! ଏ ହେଉଛି ପଶ୍ଚିମଦିଶା । ବୀଣା ତୁମ୍ବୁରୁ ଛନ୍ଦରେ ନାଚି ନାଚି ଆସୁଛନ୍ତି ଗନ୍ଧର୍ବ କୁଳ, ସିଦ୍ଧ ସାଧକ, ଯକ୍ଷ, ରକ୍ଷ ଓ କିନ୍ନର । ଉନ୍ନତ ମଣିଚୂଡ଼ା

ଫଣା ଟୋଳି ଇନ୍ଦ୍ରନୀଳ ମଣିହାର କଣ୍ଠରେ ଧାରଣ କରି ଆସୁଛନ୍ତି ବଳଶାଳୀ ପନ୍ନଗରାଜାମାନେ । ବରଦମୁଦ୍ରାରେ ଜଗତ୍‌କଲ୍ୟାଣକାରୀ ମହୌଷଧିମାନେ ଆସୁଛନ୍ତି । ତାଙ୍କ ପଶ୍ଚାତ୍‌ରେ ମହେନ୍ଦ୍ର, ବିନ୍ଧ୍ୟାଚଳ, ହିମାଦ୍ରି ଆଦି ମହା ମହା ପର୍ବତରାଜମାନେ ତୁଷାର କିରୀଟ ଶୋଭା ଧାରଣ କରି ମନ୍ଥର ବିନମ୍ର ଗତିରେ ଆସୁଛନ୍ତି । ଆସୁଛନ୍ତି ସିନ୍ଧୁ ଆଦି ସରିତ୍‌ପତିମାନେ । ଆସୁଛନ୍ତି ମହୋଦଧିଙ୍କ ଗହଣରେ ଲବଣ ସାଗର, କ୍ଷୀରସାଗର ଏବଂ ପ୍ରଶାନ୍ତ ଗମ୍ଭୀର ମହାସରସାଗରମାନେ । ଦୂର ଦୂରାନ୍ତର ଶୂନ୍ୟ ଶୂନ୍ୟାନ୍ତରରୁ ଆସୁଛନ୍ତି ଜ୍ୟୋତିଷ୍କକ୍ରର ଗ୍ରହଗଣ, ତାରକା, ନକ୍ଷତ୍ରପୁଞ୍ଜ, ଧୂମିଳ ନିହାରିକାମଣ୍ଡଳ । ଏ ସମସ୍ତଙ୍କ ପଶ୍ଚାତ୍‌ରେ ସେ ଯେଉଁ ଘନନୀଳ ବିପୁଳ ମହାବ୍ୟାପ୍ତି ବିରାଜମାନ କରିଛନ୍ତି ସେ ହେଉଛି ଅନନ୍ତ । ସମସ୍ତ ଦିଗଚକ୍ରକୁ ବେଢ଼ିରହିଛି ତାଙ୍କର ଅପରିମେୟ କୁଣ୍ଡଳୀ । ତାଙ୍କର ନିଃଶ୍ୱାସ-ପ୍ରଶ୍ୱାସରେ ଏ ଦୃଶ୍ୟମାନ ଜଗତ ଆସେ ଏବଂ ଯାଏ । ଏଠି କାହାକୁ ପ୍ରଣିପାତ ହେବ ଭଗତେ; କେଉଁଠି ପ୍ରଣିପାତ ହେବ ? କରଯୋଡ଼ିବାକୁ ବେଳ କାହିଁ, ବଳ କାହିଁ ? ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ, ନମସ୍ତୁତେ ସର୍ବତ ଏବ ସର୍ବ !

ବଡ଼ଦାଣ୍ଡ ଉପରେ ବିମୂଢ଼ ହୋଇ ଉତ୍ତାନ ପଡ଼ିଯିବାପରେ ଯାହା ଦିଶୁଚି ତାହା ମହାକାଳଙ୍କର ଭବିତବ୍ୟ ବିନ୍ଦୁ । ସେ ଯେ ପ୍ରଭାମୟ ମେଘଖଣ୍ଡ ପୁଞ୍ଜିଭୂତ ନକ୍ଷତ୍ରପରି ବିରାଜମାନ କରିଛନ୍ତି ସେମାନେ ହେଉଛନ୍ତି ଆମ୍ଭମାନଙ୍କର ଉତ୍ତର ପୁରୁଷ; ନୂତନ ଯୁଗର ଅପ୍ରକଟ ବିଭବ । ତାଙ୍କ ଉପରକୁ ଆହୁରି ଜ୍ୟୋତିଷ୍ମାନ୍ ରାଜ୍ୟ ଏବଂ ତଦୂର୍ଦ୍ଧ୍ୱରେ କେବଳ ଏକ ଅଖଣ୍ଡ ଅବର୍ଣ୍ଣନୀୟ ଜ୍ୟୋତି । ଆମର ଅପସାରଣ ପରେ ଏ ଜ୍ୟୋତି ବିନ୍ଦୁଗୁଡ଼ିକ ବଡ଼ଦାଣ୍ଡକୁ ଓହ୍ଲେଇ ଆସିବେ । ଜ୍ୟୋତିର୍ମୟ ହେବ ଏ ପୃଥିବୀ । ଅବତରଣ କରିବ ଉର୍ଦ୍ଧ୍ୱ ଭୂମିରୁ ଆଲୋକର ଅଳକାନନ୍ଦା ! ହେ ମୋର ପରାଭୂତ ସ୍ନାୟୁମଣ୍ଡଳ ! ଆଉ କିଛି ସମୟ ଏ ବସ୍ତୁ ତୋରଣକୁ ଟୋଳିଧର । ଶିଥିଳ ଅଙ୍ଗଗୁଡ଼ିକରେ ମନ୍ଦୀଭୂତ ରକ୍ତପ୍ରବାହ, ଆଉ କିଛି କାଳ ପ୍ରବାହିତ ହୁଅ ! ନଇଁ ଆସୁଥିବା ଘନ ତମିସ୍ରାର ପଲକ ଯୋଡ଼ିକୁ ଟୋଳିଧର ଭଗତେ, ଏ ଚକ୍ଷୁଗୋଲକକୁ କିଛି ଜ୍ୟୋତି ଦାନକର । ମୁଁ ଦେଖେ ସେ କଲ୍ୟାଣତମ ପୁରୁଷଙ୍କର ରୂପ । ମୁଁ ଦେଖିପାରୁଛି ଦାସ ପ୍ରଧାନଙ୍କୁ,

ହାତରେ ପାଟ ଡୋର ଧରି ଠିଆ ହୋଇଛନ୍ତି । ଭୀମ, ସାଲବେଗ ଟେକି ଧରିଛନ୍ତି ବାହୁଯୁଗଳ । ମଲ୍ଲୀମାଳ ମଣ୍ଡି ଦେଉଛନ୍ତି ଗୋପାଳକୃଷ୍ଣ । ବେଢ଼ି ରହିଛନ୍ତି ଚିହ୍ନାଚିହ୍ନା ଅନେକ ଭକ୍ତ । ଦେଶଦେଶାନ୍ତରରୁ ଆଗତ, କାଳ-କାଳାନ୍ତରରୁ ସମାଗତ ଅକଳନୀୟ ଭକ୍ତସମୁଦ୍ର ଆନ୍ଦୋଳିତ ହେଉଛି । ଆନ୍ଦୋଳିତ ହେଉଛି ଅନ୍ତରୀକ୍ଷ, ଦ୍ୟାବା ଏବଂ ପୃଥିବୀ ।

ମୁହୂର୍ତ୍ତକରେ ମୋତେ କହିଦିଅ, ଭଗତେ ଏ ବିଶାଳ ମନ୍ଥନର କେନ୍ଦ୍ରରେ ସେ କିଏ ? ସେ କ'ଣ ସେଇ ? ସେଇ ବିସ୍ମୟ ? ଦୟାକର ଭଗତେ, 'ହଁ' ବୋଲି କହ ନାହିଁ, ସମୁଦ୍ରରେ ବୁଡ଼ିଯିବି ! 'ନା' ବୋଲି କହନାହିଁ ଜଗତେ, ନିର୍ବାତ ଶୂନ୍ୟରେ ଛାତି ଫାଟିଯିବ ! ତୁନି ପଡ଼ିଯାଅ ! ତୁନି ପଡ଼ିଯାଅ !!

⊙

"ଶୁଣରେ ଶବରା ତୋର ପତ୍ର ପୁଷ୍ପ ଫଳେ, ମନ ନ ରୁଚିଲା ଏବେ ଯିବା ନୀଳାଚଳେ । - କେତେକାଳ ହେଲା ଏ ପଦକ କହିଦେଇ ପଛକରି ବାହାରି ଆସିଲୁ ! ଚାହିଁ ଚାହିଁ ଯୁଗ ବିତିଗଲା । ଏମିତି କ'ଣ ରୋଷ କରନ୍ତି ? ଶବରା ହେବା ନ ହେବାରେ ମୋର କିସ ଆୟତ୍ତ ? ବଣରେ ଜନ୍ମିଲା ଉତ୍ତାରୁ ପତ୍ରଟିଏ, ଫୁଲଟିଏ, ଫଳଟିଏ ଦେଇ ସେବା କରିବା କ'ଣ ଦୋଷରେ ଲେଖାହେଲା କି ? ବୁକୁ ଉପରକୁ ଆଉଜେଇ ନେଇଥିଲୁ । ତୋତେ ସବୁ ସମର୍ପି ଦେଇ ମୁଁ ସବୁ ପାଇଥିଲି । କେଡ଼େ ବଡ଼ ଶରଧା ତୁଟେଇଦେଲୁ । ଆସିଲୁ ଯେ ଆଉ ଫେରି ଚାହିଁଲୁ ନାହିଁ । ପୁଣି ଆଷାଢ଼ ଆସିଗଲା । ବଣରେ ଥୋଲା ଥୋଲା କୋଳି ପାଚି ଝଡିବ । ତୋ'ର କ'ଣ ଶବରା କଥା ତିଳେ ହେଲେ ମନେ ପଡୁନାହିଁ । ଆସନ୍ତୁ ଯଦି, ଧନ, କାନ୍ଧରେ ବସେଇ ଘେନିଯା'ନ୍ତି । ତୋ ଗୋଡ଼ରେ କଣ୍ଟା ବାଜନ୍ତା ନାହିଁ । ବଣ ଭିତରେ ମୋ ଶୁଖିଲା ଗଛ କଅଁଳି ଯା'ନ୍ତା । ପଥର ଖୋପରୁ ପାଣି ଝରିଯା'ନ୍ତା ।"... ଆଖିରେ ଥୋଲା ଥୋଲା କାରୁଣ୍ୟ । କେରିକେରି ଧଳା ବାଳ । ଶହଶହ ବର୍ଷର ଭାରରେ ନଇଁପଡିଥିବା ଧଳା ଧଳା ଭୁରୁ । ବିଶ୍ୱାବସୁ ଶବର ବିଡମ୍ବିତ । ପେଟ ଦି' ଭାଗ ହୋଇ ଭାଙ୍ଗିପଡୁଚି କୋହ । ଆଣ୍ଠୁଯାଏ ପାଦ ଦୁଇ ଧୂଳିଧୂସର । ଥରେ ମାତ୍ର ନୀଳାଦ୍ରି ଶିଖକୁ ଚାହିଁ ଦେଇ ଆଖି ନଇଁଆସିଛି ତଳକୁ । ସତେ କ'ଣ ସେ ଏତେ ଉଚ୍ଚରୁ ଓହ୍ଲେଇବ ? ଏ ଭୂଇଁ ଉପରେ ଆସି ଠିଆହେବ ? ...ଆଷାଢର ଓଦା ଓଦା ପବନରେ ଶୁଖିଲା ପତ୍ରଟିଏ ପରି ଥରିଯାଉଛି ଶୀର୍ଣ୍ଣ ଦେହ । ହରିଣଛୁଆ ପରି ଆଖି ମେଲି ଚକିତ ହେଲାପରି ଚାହିଁଛନ୍ତି ନିର୍ବାକ ଶବରପଲ୍ଲୀର ବନବାସୀ ପରିବାର । ସେମାନେ ଆସିଛନ୍ତି ବହୁବାର । ଉଆସ ଜଗୁଆଳିମାନେ ତାଙ୍କୁ ବାରମ୍ବାର ତଡିଦେଇଛନ୍ତି । ତାଙ୍କ ପ୍ରାଣରେ ଉତ୍କଣ୍ଠା, ମନରେ ସଂଶୟ, ଆଖିରେ ବିସ୍ମୟ !!

ଚାରି ଦିନକୁ କଣ୍ଟ କରି ଚାରି ଯୁଗ ବିତିଗଲା । ଏଭଳି କଇତବ କଥା କ'ଣ ମହତଜନଙ୍କୁ ସୁନ୍ଦର ଦିଶୁଛି ? ଆମେ ସିନା ଅଧମ ଜାତି; ଛନ୍ଦମନ୍ଦ ବୁଝିପାରୁନାହିଁ । ଆମକୁ ଏପରି କପଟ କଥା କହି ନିରାଶ କରିବା ଉଚିତ ବେଭାର ହେଲା କି ? କେତେ ଶ୍ରାବଣ ବର୍ଷା ବିତିଲାଣି । କେତେ କଦମ୍ବ ଫୁଟି ଝଡିଲାଣି । ଆମେ ଅନ୍ଧାର ରାତିକୁ କାନେଇଛୁ, କିଛି ଶୁଭୁ ନାହିଁ । ନଈକୂଳ ସାରା ଖୋଜିଛୁ, କିଛି ଦିଶୁନାହିଁ । ପ୍ରାଣ ଦିଆନିଆ ହେଲାପରି ମମତା ଲଗେଇ ଏମିତି ଛିଣ୍ଡେଇ ଦେବା କେଉଁ ବିବେକପଣ ? ଫଳ ଖାଇ ଚୋପା ଫୋପାଡି ଦେଲ । ମିଛ କହି ଭଣ୍ଡିଦେଲ ।... ଧାର ଶୁଖିଗଲେ ସୁଦ୍ଧା ସେ ଯମୁନା ଅଛି ବୋଲି ତାକୁ ଚାହିଁ ଆମେ ବଞ୍ଚିଛୁ । କଳାଘୁମର ନୂଆ ମେଘ ଉଠୁଛି, ଫେରନ୍ତି ରଥ ପରି ଡାକୁଛି ବୋଲି ତାକୁ ଚାହିଁ ବଞ୍ଚିଛୁ । ସ୍ୱପ୍ନ ଅଛି ବୋଲି ବଞ୍ଚିଛୁ । ନ ହେଲେ ତ ତୁମ ବ୍ୟବସ୍ଥାରେ କଥା ସରିଥିଲା । ଏବେ କ'ଣ ଆସିବ ବୋଲି ଶୁଣୁଛୁ । ଇନ୍ଦ୍ରପଦରେ ପାଦ ଦେଇ ଓହ୍ଲେଇବ ବୋଲି ହୁରି ପଡିଛି । ଆସିଲେ ଆମକୁ ଚିହ୍ନିବ ଟି !– ସବୁ ସର ଲହୁଣୀ ତୁମପାଇଁ ସଞ୍ଚି ସଞ୍ଚି ଆମେ ଝଡିଗଲୁଣି । ଚିହ୍ନାପଡିବାକୁ ଦେହରେ ଗେରୁ ମାଟି ମାଖିଛୁ । ମୁଣ୍ଡରେ ଜାମୁଡାଳ ଖଞ୍ଜିଛୁ । ଗୁଞ୍ଜମାଳି ଆଣିଛୁ, ମୟୂରପୁଚ୍ଛ ଆଣିଛୁ ତମପାଇଁ । ଗୋପାଳୁଣି ମାନେ ଗୋପପୁରର ସର୍ବସ୍ୱ ମୁଣ୍ଡେଇ ଆସିଛନ୍ତି । ତାଙ୍କ ଆଖିରେ କଜଳ ରହୁନାହିଁ । ହାତରେ କଙ୍କଣ ରହୁନାହିଁ । ପିଣ୍ଡରେ ପ୍ରାଣ ରହୁନାହିଁ । ଆଉ ଥରେ ଦେଖିବେ ବୋଲି ବାହାରି ଆସିଛନ୍ତି । ତାଙ୍କ ଆଖିରେ ଆସିଛି ଯମୁନା । ଦେହରେ ଆସିଛି କଦମ୍ବ ଥରଥର ଅଙ୍ଗରେ ଲାଗିରହିଛି କାକର ପବନ ।... ଏଥର ନିରାଶ କଲେ କିନ୍ତୁ ଆଉ ଖୋଜିଲେ ପାଇବ ନାହିଁ । ତୁମେ କ'ଣ ସତେ ଆସିବ ?"

..ପାଇକଛା ମାରି, ମୁଣ୍ଡରେ ଠେକା ଭିଡି କାନ୍ଧରୁ ଭାର ଥୋଇ ଠିଆ ହୋଇଛନ୍ତି ଗଉଡ଼ମାନେ । ତାଙ୍କ ପଛକୁ ଟୋକା ଭାଇ ଘୁମୁରା ଥୋଇ ବସିଛନ୍ତି, ନାଚିବେ । ଶିଙ୍ଗା ଧରିଛନ୍ତି ଫୁଙ୍କିବେ । ଚାହିଁଛନ୍ତି ପଥର ଉଆସକୁ । ଯଦି ଆସେ ସେ ସିନା ବୁଝିବ ଗଉଡ଼ଙ୍କ ଖେଳ । ବାକି ଏମାନେ ତ ମଥୁରାବାସୀ; ଯାଙ୍କୁ କ'ଣ ଜଣା ?

"ତୋତେ ତ୍ରିପାଦଭୂମି ଦେବି ବୋଲି ଶଙ୍ଖରେ ପାଣି ଟେକିଥିଲି । ଦାତାପଣେ ଛତ୍ର ଟେକିଥିଲି । ବଟୁ ରୂପରେ ଆସି ତୁ ମୋତେ ମୋହିତ କରିଥିଲୁ । ତା' ଉତାରୁ ମୁହୂର୍ତ୍ତକରେ ଘୋଟିଗଲୁ ଚତୁର୍ଦ୍ଦିଗ, ପୃଥିବୀ ଏବଂ ଅନ୍ତରୀକ୍ଷ । ତୃତୀୟ ପାଦ ପାଇଁ

ମୁଁ ଶିର ପାତି ଦେଇଥିଲି । ମୋ ପାଇଁ ପାତାଳ ଆଚ୍ଛାଦିତ କଲୁ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସେ କାଳୁ ଅଖଣ୍ଡୈକ ଘୋଟି ରହିଛୁ । ତେବେ ସୁଦ୍ଧା ମୋ ଦ୍ୱାର ଜଗିଛୁ ବୋଲି ଲୋକାପବାଦ ସହିପାରିଲି ନାହିଁ । ଆସିବୁ ବୋଲି କହି ତୁ ଆସିନାହୁଁ । ଚାରିଆଡ଼େ ସ୍ତବ ଗାନ ହେଉଛି ତୁ ଆସିବୁ ବୋଲି । କେଡ଼େ ଆଶା ବାନ୍ଧି ତୋର ସେ ବାମନ ରୂପ ଦେଖିବାକୁ ମୁଁ ପାତାଳରୁ ଉଠିଆସିଛି !!

"ଆକାଶରେ କନକବର୍ଣ୍ଣା ଉମା ଆବିର୍ଭୂତା ହୋଇ କହିଥିଲେ ଯେ ଆମକୁ ଶାସନ କରିଥିବା ପରମ ପୁରୁଷ ହିଁ ଯକ୍ଷ ରୂପରେ ଅବତୀର୍ଣ୍ଣ ହୋଇଥିଲେ । ତୃଣକୁ ତୃଣଜ୍ଞାନ କରି ଆମେ ପରାସ୍ତ ହୋଇଥିଲୁ । ତୋହରି ଆଜ୍ଞାରେ ମୁଁ ଇନ୍ଦ୍ର । ତୋହରି ଆଜ୍ଞାରେ ଅଗ୍ନି, ବାୟୁ ଏବଂ ବରୁଣ । ସେମାନେ ତୃଣରେ ମାତିଲେ, ଦେଖିଲେ ନାହିଁ । ମୁଁ ଦେଖି ପାରିଲି ନାହିଁ ତୁ ପରିବ୍ୟାପ୍ତ ହୋଇସାରିଥିଲୁ । ସେହି ଦିନଠାରୁ ତୋର ପ୍ରଶାସନ ଭୟରେ ଆମେ ଧାବିତ ହେଉଛୁ । ସେହି ଦିନଠାରୁ ଅରୂପର ରୂପ ଦର୍ଶନ କରିବାକୁ ଏ ବିସ୍ତୃତ ବିଶ୍ୱର ଅଣୁ-ପରମାଣୁ ଭିତରେ ଅନ୍ୱେଷଣ କରୁଛୁ । ଆକାଶ ଆଜି ଦେବାକୀର୍ଣ୍ଣ । ଦେବଲୋକରେ ଚହଳ ପଡିଛି ଯେ ଅପ୍ରକଟ ଆଦିପୁରୁଷ ଆଜି ଲୀଳାମଧୁର ହେବେ । ସତେ କ'ଣ ସାର୍ଥକ ହେବ ତପସ୍ୟା ?... ସତେ କ'ଣ ପୁରୁଷୋତ୍ତମ ବିଜେ ହେବେ ?

ଅବଶ୍ୟ ବିଜେ ହେବେ !!

ଆକାଶର କୋଣ ଅନୁକୋଣରୁ ଦୁନ୍ଦୁଭି ବାଜିଲାଣି । ଉଲ୍ଲସିତ ମହୋଦଧି ଲକ୍ଷେ ମହାଶଙ୍ଖର ଲହର ତୋଳି ନିନାଦିତ ହେଲେଣି । ମଧୁଚକ୍ର ପରି ନଦିଆ, ଆହାମିଆ, ଶ୍ୱେତାଙ୍ଗ ସଂପ୍ରଦାୟର କୀର୍ତ୍ତନମଣ୍ଡଳିମାନେ ମୃଦଙ୍ଗ ଝାଞ୍ଜର ନାଦଛନ୍ଦରେ ସ୍ପନ୍ଦିତ ହେଲେଣି । ସହସ୍ର କଣ୍ଠରୁ ମହାମନ୍ତ୍ର ଉଚ୍ଚାରିତ ହେଉଛି । ବଳିଷ୍ଠବାହୁ ବାଦକମାନଙ୍କୁ ଘେରି ଗିନିକରତାଳରେ ଗହଗହ ହେଉଛନ୍ତି ଓଡ଼ିଆ କୀର୍ତ୍ତନ ଗୋଷ୍ଠୀ । ଗାୟକ ଉନ୍ମତ୍ତ ହେଲା ପ୍ରାୟ ଦ୍ରୁତ ଛନ୍ଦରେ ବୋଲୁଛନ୍ତି, 'ବଡ଼ ଦୟାଳୁ ଠାକୁର!' ଝୁଲି ଝୁଲି ଖଞ୍ଜଣି ପିଟୁଛନ୍ତି ନିରଞ୍ଜନ ସେବକମାନେ । ଏକତାନରେ ବୋଲୁଛନ୍ତି, 'ଦିଅଁ ଦେଖି ଯିବା ଗୋ, ସହି । ସିନ୍ଧୁ ତଟ ବଟ କୂଟରେ ବିଜୟେ ରାଧାକୃଷ୍ଣ ଯିହିଁ ବାରଣ ନୋହି- ଦିଅଁ ଦେଖି ଯିବା ଗୋ, ସହି ।".. ଗୋପାଳ ଓଗାଳ ତା'ର ସ୍ୱାଭାବିକ ସାହସିକ ଛନ୍ଦ ଏବଂ ସ୍ୱରରେ ବଡ଼ଦାଣ୍ଡ ମୁଖରିତ କଲାଣି । ...ବାଗୁଲିବାଲିଆ

ଗଜା ଗଜା ଗଉଡ଼ ଟୋକାମାନେ ବାଡିଖେଳରେ ମାତିଲେଣି । ବାଡି ମାଡରେ ଛନ୍ଦ ଛିଡିପଡୁଛି । 'ଟୋପି ଟୋପି କରି ଚନ୍ଦନ ମଣ୍ଡିଛନ୍ତି କି ସଜେ । ଟେକିବାରେ ଚାହାଁ ମଥୁରାଦାଣ୍ଡେ ଗୋବିନ୍ଦ ବିଜେ ।'... ଝୁମୁରଲଗା ରାମତାଳି ସହିତ ଗେରୁଆ ପିନ୍ଧା ରୁଦ୍ରାକ୍ଷ ମାଳାପରିହିତ ଯମୁନାତୀରବାସୀମାନେ ଭାବବିଭୋର ହୋଇ ବୋଲିଲେଣି- 'ଉଧୋ, ମନ ନ ଭଏ ଦଶ ବିଶ୍ ।'... ଭସ୍ମବିଲେପିତ ଜଟାମଣ୍ଡିତ ନିଃସଙ୍ଗ ସନ୍ନ୍ୟାସୀ ଚକ୍ରଚିରାଳରେ ଦୃଷ୍ଟି ନିବଦ୍ଧ ରଖି ଗଭୀର ଶଙ୍ଖନାଦ କରୁଛନ୍ତି । ଲକ୍ଷ ଲକ୍ଷ ଜଡ଼ ଚେତନ କେନ୍ଦ୍ରରୁ ଉଚ୍ଚାରିତ ଅନୁଚ୍ଚାରିତ ସ୍ତବନ ଆବାହନ ଏ ମଂଦ୍ର ଘୋଷକୁ ପରିପୁଷ୍ଟ କରୁଛି । ଶୂନ୍ୟମାର୍ଗରେ ଋଷିକଣ୍ଠରୁ ଶୁଭୁଚି, 'ହେ, ନୀଳାଚଳ ଶିଖାମଣେ । ହେ ଦୀନାର୍ତ୍ତିହାରୀ, ହେ ଦୁଃଖିଜନବାନ୍ଧବ !- ଅବତରଣ କର ଏ ନିମ୍ନଭୂମିକୁ ! ହେ, ଅପ୍ରକଟ ବିଶ୍ୱାତ୍ମା, ପ୍ରକଟିତ ହୁଅ ! ଲୀଳା ମଧୁର ହୁଅ !... ମଥିତ ସାଗର ପରି ଜନସମୁଦ୍ରରେ ଉଭା ହୋଇଛନ୍ତି ଶ୍ୱେତ କହ୍ଲାର ସଦୃଶ ରୂପାୟିତ ଭକ୍ତି । କୋମଳ ପାଟଳ ବର୍ଣ୍ଣର ଅନୁରାଗ । ଦଗ୍ଧ କାଞ୍ଚନ ବର୍ଣ୍ଣର ଅଗ୍ନିଶିଖା ପରି ଜ୍ଞାନ । ତରଳ ମେଘାଚ୍ଛନ୍ନ ତାରକା ପରି ଦିଶି ନ ଦିଶୁଥିବା କୌତୂହଳ । ଧୂମକୁଣ୍ଡଳୀ ପରି ଧୂସର ସଂଶୟ। ବର୍ଚ୍ଛା ପରି ତିଖ ଇସ୍ପାତ ରଙ୍ଗର ସ୍ପର୍ଦ୍ଧା- ଏବଂ ତରଳ ନୀରବ, ବର୍ଣ୍ଣହୀନ, ଅଗାଧ ସଂସାର । ଏ ସମସ୍ତ ଅଧୀର ହୋଇ ଅପେକ୍ଷା କରିଛନ୍ତି; ନିଜ ନିଜ ଢଙ୍ଗରେ ଆବାହନ କରୁଛନ୍ତି ।... ଏହିତ ତୁମୁଳ ଶବ୍ଦକୁ ମହିମାମଣ୍ଡିତ କରି ଶ୍ରୀମନ୍ଦିରଗର୍ଭରୁ ଶୁଭିଲାଣି ଘଣ୍ଟନାଦ । ଶୁଭିଲାଣି ବୀର କାହାଳୀ । 'ମୁଁ ଅଙ୍ଗୀକାର କରିଛି, ଅବଶ୍ୟ ଆସିବି । ପତିତପାବନ ବ୍ରତ ଧାରଣ କରିଛି, ଅବଶ୍ୟ ପାଳନ କରିବି ।' ତୃଷାର୍ତ୍ତ ଧରଣୀରେ ପ୍ରଥମ ଧାରାପାତ ପରି ଏ ଅମୃତବର୍ଷି ଘଣ୍ଟନାଦ । ଗଗନ ଅନ୍ତରୀକ୍ଷରେ କୃତାର୍ଥ ହେବାର ମୃଦୁକମ୍ପନ । ଚାରିଆଡ଼େ ଗଭୀର ଉତ୍କଣ୍ଠା । ତପସ୍ୟାରୂପୀ ଚେଳଚାଳମଣ୍ଡିତ ମହତୀ ସ୍ୟନ୍ଦନମାନେ ଉତ୍ତରାଭିମୁଖୀ ହୋଇ ଧ୍ୟାନମଗ୍ନ !!

ଆବର୍ତ୍ତକାଦି ଅଭିଜାତ ମେଘରାଜମାନେ ପୁଷ୍ପବୃଷ୍ଟି କରୁଛନ୍ତି । ପୁଷ୍ପବର୍ଷା ହେଉଛି ନୀଳାଦ୍ରି ଉପରେ, ପୁଣ୍ୟାର୍ଜିତ ରଥମାନଙ୍କ ଉପରେ, ଶତ ଶତ ଭକ୍ତଜନଙ୍କ ଉପରେ । ଦକ୍ଷିଣରୁ ଚନ୍ଦନ ସୁଗନ୍ଧରେ ଭାରାକ୍ରାନ୍ତ ମହୋଦଧିର ସୀକର-ସିକ୍ତ ବାୟୁ କୋମଳ ଚାମର ସେବା କରୁଛନ୍ତି । ବେଦଗାନ କରୁଛନ୍ତି ବ୍ରହ୍ମା । ଲକ୍ଷେ ଦୀପରେ ବନ୍ଦାପନା କରୁଛନ୍ତି ସୂର୍ଯ୍ୟ । ଗଙ୍ଗାଦି ତୀର୍ଥଜଳ ଦେବାଧିଦେବଙ୍କର ବିଜେ ମାର୍ଗକୁ

ପ୍ରକ୍ଷାଳନ କରୁଛନ୍ତି । ଋଷିମାନେ ସ୍ୱସ୍ତିବଚନ ଗାନ କରୁଛନ୍ତି । ଏହି ମାହେନ୍ଦ୍ର ମୁହୂର୍ତ୍ତରେ ବହୁ ସେବକ ଭକ୍ତଙ୍କର ଆଶ୍ଳେଷକୁ ପ୍ରଭୁ ଅଙ୍ଗୀକାର କଲେ । ଶୁଭ ଶଙ୍ଖଧ୍ୱନି ଘଣ୍ଟ-ଘଣ୍ଟା ହର୍ଷୋଲ୍ଲାସରେ ଅବତରଣ ଆରମ୍ଭ ହେଲା । 'କେହୁ ସରିକି, ପ୍ରଭୁପଣେ ନୀଳାଦ୍ରି କେଶରୀ କି !'... ବନ୍ଧୁପଣେ ଜଗବନ୍ଧୁ ବିଜେ ହେଲେ । ଚତୁର୍ଦ୍ଧାମୂର୍ତ୍ତି ବିଜେ ହେଲେ । 'ଦୂରୁ ଦେଖିଲି ଦିଶୁଅଛି ଚୂଳ । ଜଗମୋହନେ ବିଜେ ଆଦିମୂଳ !' ଭୁରୁ ଭୁରୁ ପଦ୍ମଗନ୍ଧରେ ସୁରଭିତ ହେଲା ପୃଥ୍ୱୀ । ଅସଂଖ୍ୟ ଭକ୍ତଙ୍କର ସ୍ପର୍ଶରେ ଜୀବନ୍ୟାସ ପାଇଥିବା ଶ୍ରୀମନ୍ଦିର ଶିଳାଖଣ୍ଡମାନ ରୋମାଞ୍ଚିତ ହେଲେ ।

କରପତ୍ର ଯୋଡି ଆଡ ହୋଇଗଲେ ଅଦୃଶ୍ୟ ଦେବତାମାନେ; ଦିବ୍ୟ ଜ୍ୟୋତି ବିକୀର୍ଣ୍ଣ କରୁଥିବା ଋଷିବୃନ୍ଦ । କାଳଚକ୍ରର ଗତିପରି ଦ୍ରୁତ ଏବଂ ଦୁର୍ନିବାର ବେଗରେ ବିଜେ ହେଲେ ସୁଦର୍ଶନ । 'ମଣିମା ମଣିମା' ଡାକରେ ଶ୍ରୀମନ୍ଦିର ଧ୍ୱନିତ ହେଲା । ଐରାବତ ଦନ୍ତାହତ ଗିରିରାଜ ଗୁମ୍ଫାରୁ ଅଳକାନନ୍ଦାଙ୍କର ପ୍ରଥମ ଉଲ୍ଲାସ ପରି ନିର୍ଗତ ହେଲେ ସୁଦର୍ଶନ । ଚକିତ ହେଲେ ଭକ୍ତଜନେ । ସୂର୍ଯ୍ୟୋଦୟ ପୂର୍ବରୁ ପାଟଳବର୍ଣ୍ଣ ଅରୁଣଙ୍କର ଆବିର୍ଭାବ ପରି ରକ୍ତିମ ବିଷ୍ଣୁ ଆୟୁଧ ଧାବିତ ହେଲେ । ବିଶାଳ ବିଶ୍ୱର ଘୂର୍ଣ୍ଣନକୁ ଯେ ନିୟନ୍ତ୍ରିତ କରନ୍ତି; ଜଡ଼ ଚେତନ ଚରାଚର ବିଶ୍ୱର ଜନ୍ମମୃତ୍ୟୁ, ସୁଖଦୁଃଖ, ଦିବାରାତ୍ରି ଆଦି ଚକ୍ରବତ୍ ପରିବର୍ତ୍ତନର ଯେ ପ୍ରତୀକ, ଅଶେଷ ଗ୍ରନ୍ଥିଳ ଗିରିସଂକଟକୁ ଯେ ନିମେଷମାତ୍ରେ ଛିନ୍ନ କରିପାରନ୍ତି; ସେହି ବିଦ୍ୟୁତ୍‌ବନ୍ତ ଆୟୁଧରାଜ ଅବତରଣ କରୁଛନ୍ତି । ସେ ଚକ୍ର ହୋଇ ସୁଦ୍ଧା ଚକ୍ରରୂପରୁ ଉତ୍ତୀର୍ଣ୍ଣ; ଗତିର ପ୍ରତୀକ ହୋଇ ଗତିରୁ ଉତ୍ତୀର୍ଣ୍ଣ । ଯେଉଁ ସ୍ଥିର ତର୍ଜନୀକୁ ଅକ୍ଷଦଣ୍ଡ ରୂପେ ସେ ପାଇଛନ୍ତି ତା ପାଖରେ ପୂର୍ଣ୍ଣ ସମର୍ପଣ ଯୋଗରେ ସେ ତଦ୍‌ବତ ସାରୂପ୍ୟ ଲାଭ କରିଛନ୍ତି । ଏଣୁ ତାଙ୍କର ଏ ତର୍ଜନୀ ରୂପ । ହେ ଭୀମକାନ୍ତ ସୁଦର୍ଶନ, ସର୍ବପ୍ରଥମେ ଏ ଦିବ୍ୟ ଯାତ୍ରାର ବିଘ୍ନନାଶନ ହେଉ । ଶିଶୁପାଳବତ୍ ସମସ୍ତ ଦୁଷ୍ଟ ଶକ୍ତି ନିପାତ ହୁଅନ୍ତୁ । ଅଜ୍ଞାନର ଶିରଚ୍ଛେଦ ହେଉ । କାର୍ପଣ୍ୟ, ଦାରିଦ୍ର୍ୟର ବିନାଶ ଘଟୁ । ଅନ୍ଧକାର ଦୂର ହେଉ । ଭକ୍ତଜନମାନେ ସଂସାରପୀଡ଼ାରେ କାତର ହୋଇ ଡାକୁଛନ୍ତି, 'ଚକ୍ର ନାହିଁ କି କରେ ହେ ମହିମା ! ଚକ୍ର ଚକ୍ର ହେଲା ମୋହ କର୍ମରେ କି ମଣିମା !" ସେମାନେ ଅପ୍ରମାଣିତ ହୁଅନ୍ତୁ । ହେ ଆୟୁଧ, ବିଜେ ହୁଅନ୍ତୁ, ଦେବଦଳନର କୃଷ୍ଣପାଟଳ ଗର୍ଭରେ ବିଜେ ହୁଅନ୍ତୁ । ସଂଜୀବିତ ହେଉ; ଶକ୍ତିବନ୍ତ, ବେଗବନ୍ତ ହେଉ ସ୍ୟନ୍ଦନ ।

ଏକତାଳି ଘଣ୍ଟର ଗୁରୁଗମ୍ଭୀର ମନ୍ଦ୍ରଘୋଷ ଶୁଭିଲାଣି ଶ୍ରୀମନ୍ଦିରଗର୍ଭରୁ । ପରମ ସଂଭ୍ରମରେ ଦ୍ୟାବା-ପୃଥିବୀ ସ୍ତବ୍‌ଧ ଚକିତ । ଅକସ୍ମାତ ଆକାଶରେ ଶ୍ୱେତ ପକ୍ଷୀମାନେ କଳରବ କରୁଛନ୍ତି । ଧଳା ଧଳା ସୁକୁମାର ମେଘଶିଶୁପୁଞ୍ଜ ଲୀଳାୟିତ ହେଉଛନ୍ତି । ପବନରେ ଶୁଦ୍ଧ ଚନ୍ଦନର ଗନ୍ଧ । ଶ୍ୱେତାମ୍ବରା ଦିଗଙ୍ଗନାମାନେ ଗମ୍ଭୀର ମୁଦ୍ରାରେ ସ୍ତବଗାନ କରୁଛନ୍ତି । ନୂତନ ମେଘପଟଳର ଉତ୍ତରୀ ଧାରଣ କରି ପର୍ବତରାଜମାନେ ପ୍ରଣତି ଜ୍ଞାପନପୂର୍ବକ କରଛଡ଼ା ଦେଇ ଠିଆ ହୋଇଛନ୍ତି । ବିଜେ ହେଉଛନ୍ତି ବଡ଼ଠାକୁର। ରଜତଗିରିନିଭ ଧ୍ୟାନ-ଗମ୍ଭୀର ମୂର୍ତ୍ତି ! ଜ୍ୟୋତ୍ସ୍ନାସ୍ନାତ ଅନନ୍ତ ମହାକାଶ ପରି ବିପୁଳ ସୁନ୍ଦର ଗୌରବପୁ । ସେନାପଟାଭିଡ଼ା ତ୍ରିପୁର-ବିଜୟୀ ଯୋଧୃବେଶ ! ସେ ପ୍ରଲମ୍ବ ବିଶାଳ ଭୂଜରେ କେରି କେରି ନକ୍ଷତ୍ରମାଳା । 'ପ୍ରଭୁ, କିସ ବାହୁନିବି ଭୁଜକୁ; ଭୁଜ ସୁନ୍ଦର ଦିଶଇ ଯୁଝକୁ ।" -'ସାତକୋଟି ପର୍ବତରୁ ଅଟନ୍ତି ସେ ଗରୁ, ନାମ ବହି ଅଛନ୍ତି ଅଚଳ ମହାମେରୁ!' ବିକୀର୍ଣ୍ଣ ମୟୂରପୁଚ୍ଛ ପରି ଟାହିଆର ଦୋଳନ, କାଦମ୍ବରୀପାନରେ ଅରୁଣବର୍ଣ୍ଣ ଘୂମିତ ଚକ୍ଷୁଯୁଗଳ ।, ରଙ୍ଗା ଅଧରରେ ଈଷତ୍ ମଧୁର ବିଭୋର ସ୍ମିତହାସ ଦେଖି ଦେବଗନ୍ଧର୍ବଗଣ ଉଲ୍ଲସିତ ହେଉଛନ୍ତି । 'ବ୍ରହ୍ମା ଡାକୁଛନ୍ତି ଦେବ ମଣିମା ମଣିମା !" ଇନ୍ଦ୍ର ଡାକୁଛନ୍ତି ଦେବ ଗୁହାରି ଶୁଣିମା ।" ଋତ୍ୱିକ୍‌ମାନେ ପୂତ ପ୍ରଣବ ଧ୍ୱନି କରୁଛନ୍ତି, 'ଶୁକ୍ରମ୍, ଆକାୟମ୍, ଅବ୍ରଣମ୍, ଅସ୍ନାବିରମ୍, ଶୁଦ୍ଧମ୍, ଅପାପବିଦ୍ଧମ୍ ।!".. ମଦମତ୍ତ ଶ୍ୱେତହସ୍ତୀପରି ଝୁଲି ଝୁଲି ପହଣ୍ଡି ବିଜେ କରୁଛନ୍ତ ବଳଦେବ ଠାକୁର । ପାଟ ଚିମୁଳି ଉପରକୁ ଏ ମନ୍ଦର ଗିରି ଖସିଲାବେଳେ ଗୁମ୍‌ଗୁମ୍ କମ୍ପୁଛି ନୀଳାଚଳ । ପ୍ରତିଧ୍ୱନିତ ହେଉଛି ବଡ଼ଦାଣ୍ଡ । ସହସ୍ରେ ଚାରସେବାରେ, ଅସଂଖ୍ୟ ଶଙ୍ଖଧ୍ୱନି ଭିତରେ, ପାଟଡୋରର ଆକର୍ଷଣକୁ ସ୍ୱୀକାର କରି ଓହ୍ଲାଉଛନ୍ତି ନୀଳାଦ୍ରିଶିଖରରୁ ଭବଭୂମିର ବଡ଼ଦାଣ୍ଡ ଉପରକୁ ମହାମହିମ ବଜ୍ରଲାଙ୍ଗଳୀ ! ଆସ ପ୍ରଭୁ, ଧବଳ ଜ୍ୟୋତିରେ ଭୂଭାଗ ଆଲୋକିତ ହେଉ । ପହଣ୍ଡି ବିଜୟ ବେଳେ ସେ ବିକ୍ରମଠାଣି ଦେଖି ପାଖେଇବାକୁ ହୁବ ପାଉନାହିଁ । ପାଖେଇଲେ ଛିଟିକିପଡିବାର ଭୟ, ଛୁଇଁଦେଲେ ଜଳିଯିବାର ଭୟ ମନରୁ ଯାଉନାହିଁ । ନ ହେଲେ ବା 'ଚନ୍ଦନ ବେଶ ମୁଁ କରନ୍ତି ମୋର ହେଉଛି ମନ ।' ମଣ୍ଡିଦିଅନ୍ତି ଶ୍ରୀଭୁଜରେ ତମାଳମାଳା । ନୀଳାମ୍ବରର କୁଞ୍ଚ ସଜାଡିବା ଆଳରେ ସେ ଉଦାର ବକ୍ଷ ଉପରେ ସମର୍ପିତ ହୋଇ ରୋଦନ କରନ୍ତି । ହେ ଅନନ୍ତ ମହାପ୍ରଭୁ, ସବୁବେଳେ କଣ ଏଭଳି ଶୁଦ୍ଧ ଗମ୍ଭୀର

ହୋଇ ରହିଥିବ ? ଏଭଳି ନିଷ୍କମ୍ପ, ନିସ୍ତରଙ୍ଗ ହୋଇ ଦେଖୁଥିବ ସୃଷ୍ଟିକୁ ? ସୁରସିକା ଗୋପାଙ୍ଗନା ସୁଦ୍ଧା ଭୟରେ ପାଖ ପଶିପାରୁ ନଥିବେ । ହେ ଶିବ କଳ୍ପତରୁ, ସବୁବେଳେ କ'ଣ ମଦନ ଭସ୍ମ ହେବା ବିଧି ? ଯୋଗାରୁଢ ପୁରୁଷ ଆଜି ଲୀଳା-ଚଞ୍ଚଳ ! ମଧୁର ରସରେ ଆଜି ରେବତୀ-ରମଣ କାଦମ୍ବରୀ ପାନ କରିଛନ୍ତି; ଭକ୍ତଜନଙ୍କ ଆଶ୍ଳେଷ ସ୍ୱୀକାର କରିଛନ୍ତି ! ପହଣ୍ଡି ବିଜେ ହେଉଛନ୍ତି ତାଳଧ୍ୱଜ ଉପରକୁ । ବିଜେ ହେବା ହେଉ ଗୁରୁଣାଂ ଗୁରୁ ଦେବାଧିଦେବ ! ହେ ଅଚଞ୍ଚଳ ଧର୍ମପୁରୁଷ ଆଦିମ ଋତଂ, ସତ୍ୟମ୍, ପ୍ରତିଷ୍ଠିତ ହୁଅନ୍ତୁ ।

ତ୍ରିପୁର ସ୍ତମ୍ଭିତ ହୋଇ ଚାହିଁରହିଛି ବିଜେ ଯାତ୍ରାକୁ । ନୀଳାଚଳରେ ପଦ୍ମଗନ୍ଧ । ସ୍ଥିର ତଡିତ୍ ପରି କାଞ୍ଚନ ବର୍ଣ୍ଣ ଦଶଦିଗ ଆଚ୍ଛାଦିତ କରୁଛି । ଅନନ୍ତ ସୃଷ୍ଟିର ପଶ୍ଚାତରେ ଅନିର୍ବଚନୀୟା ଚିତ୍‌ରୂପିଣୀ ଇଚ୍ଛାଶକ୍ତି ପ୍ରକଟିତ ହେଉଛନ୍ତି । ହେ କନକୋଜ୍ୱଳ, ସବିତା-ବରଣୀ, କରୁଣାମୟୀ ମା', ତାମସହରଣି ! ଭଦ୍ରେ ସୁଭଦ୍ରେ ! କଲ୍ୟାଣମୟୀ ! ମାହେଶ୍ୱରୀ ! ଅବତରଣ କର ! ମଧୁର ଘଣ୍ଟଧ୍ୱନିର ଲଳିତ ଛନ୍ଦରେ ବିଜେ ହେଉଛନ୍ତି ଚିନ୍ମୟୀ, ମାତୃରୂପା ସୁଭଦ୍ରା । ଆଲଟ, ଚାମର, କସ୍ତୁରୀ, କେଶର, ସେବା କରୁଛନ୍ତି ଆଦିତ୍ୟମାନେ । ବିଜୁଳିର ଝଟକେ ପରି ଭୂମି ସ୍ପର୍ଶ ନ କରି ଅବତରଣ କରୁଛନ୍ତି ସୂକ୍ଷ୍ମରୂପା ଜନନୀ ! ହେ ସର୍ବମଙ୍ଗଳ ମାଙ୍ଗଲ୍ୟେ, ଶିବେ ସର୍ବାର୍ଥସାଧିକେ, ହେ ତ୍ର୍ୟମ୍ବକେ ଗୌରୀ, ନାରାୟଣୀ ! ତୁମକୁ ନମସ୍କାର । ହେ ଜନନୀ, ଜାୟା, ଭଗିନୀରୂପିଣୀ ! ଶାନ୍ତି, ଧୃତି, ପ୍ରୀତି, ଶୁଦ୍ଧି, ସିଦ୍ଧିପ୍ରଦାୟିନୀ । ହେ ଦୁର୍ଗେ, ଦୁର୍ଗତିନାଶିନୀ ! କାଳୀ, କରାଳିନୀ, ବିମଳେ ! ହେ ବିଦ୍ୟେ, ହେ ଅବିଦ୍ୟେ, ହେ ମନ୍ତ୍ରରୂପିଣୀ ଜଗଦମ୍ବେ, ଶକ୍ତି ସଞ୍ଚାର କର । ଚେତନା ଦାନକର । 'ଦେହି ବୁଦ୍ଧିମ୍ ପ୍ରଶସ୍ତାମ୍; ଦେହି ଚିତ୍ତମ୍ ପ୍ରଶସ୍ତମ' । ଦେବ-ଦାନବ-ମାନବସେବ୍ୟା ଜନନୀ ସୁଭଦ୍ରା ଅଗୁରୁଗନ୍ଧ, ଚୁଆ ଚନ୍ଦନ, କସ୍ତୁରୀବାସରେ ଦଶଦିଗ ଆମୋଦିତ କରି ବିଜେ ହେଉଛନ୍ତି । ଜଗତ୍‌କାରିଣୀ, ଜଗତାରିଣୀ ରୂପେ ବିଜେ ହେଉଛନ୍ତି । ମା' ତୋର ସ୍ଥିତି ଅଭୟ ପ୍ରଦାନ କରୁଛି । ମନରେ ଶୁଦ୍ଧ ଅଭୀପ୍‌ସା ଜାଗ୍ରତ ରଖୁଛି । ଚତୁର୍ବର୍ଗ ପ୍ରଦାୟିନୀ ଐଶ୍ୱର୍ଯ୍ୟଦାତ୍ରୀ ବିଶୁଦ୍ଧା ସ୍ନେହରୂପା ଭଗ୍ନୀରୂପା ସୁଭଦ୍ରା ଦେବଦଳନରେ ପ୍ରତିଷ୍ଠିତ ହୁଅନ୍ତୁ !

ଯା'ପରେ ସମଗ୍ର ଉତ୍କଣ୍ଠିତ ବିଶ୍ୱରେ ନନ୍ଦିଘୋଷର ଅନନ୍ତ ପ୍ରତୀକ୍ଷା ! ହେ ଦାରୁକ, ରଶ୍ମିରେ ସମାଧିସ୍ଥ ହୁଅନ୍ତୁ । ହେ ପରମ ତପସ୍ୱୀ ଅଶ୍ୱମାନେ, ରଥରେ

ସମାହିତ ହୁଅନ୍ତୁ । ହେ ମାରୁତି, ଏ ମହତୀ ସ୍ୟନ୍ଦନର ଭୂମିଠାରୁ ଧ୍ୱଜା ପର୍ଯ୍ୟନ୍ତ ସକଳ ଗ୍ରନ୍ଥି, ସକଳ ଅଂଗ ଆପାଦଶୀର୍ଷ ନିଜ ବାହୁବଳରେ ଆକର୍ଷଣ କରି ସ୍ତମ୍ଭିତ ହୁଅନ୍ତୁ । ସୀମାଗର୍ଭରେ ଅସୀମ ପ୍ରବେଶ କରିବେ। ବସ୍ତୁ ସଂଘର ଶୀର୍ଷ ବିଦାରଣ କରି ଶୁଦ୍ଧ ଚୈତନ୍ୟ ଅନୁପ୍ରବିଷ୍ଟ ହେବେ । ମହାଭୂମି ଉପରେ ପୃଥିବୀ ଅଚଳା ରହୁ । ଦିଗ୍‌ଦନ୍ତୀମାନେ ସ୍ଥିର ରହନ୍ତୁ । ବ୍ରହ୍ମା ଏ ମହାବିଶ୍ୱର ଜନ୍ମାଦି ସ୍ୱରୂପ କଳ୍ପାନ୍ତକ ଛନ୍ଦରେ ସ୍ୱୟଂ ଗତାଗତ ହେବାରେ ଚିନ୍ତନ କରି ବେଦମାନଙ୍କୁ ନାଦବିନ୍ଦୁରେ ସମାହିତ କରନ୍ତୁ । ଇନ୍ଦ୍ରାଦି ଦିଗ୍‌ପାଳମାନେ ଭୀତତ୍ରସ୍ତ ନ ହୋଇ ସ୍ୱସ୍ଥାନ ରକ୍ଷା କରନ୍ତୁ । ମହାକାଳ ଶିବ ସମାଧିସ୍ଥ ହୁଅନ୍ତୁ । ହେ ଭକ୍ତଜନେ ! ନିଜ ନିଜର ପଶ୍ଚାତ୍‌ରେ ଅସଂଖ୍ୟ ପିତୃପୁରୁଷଙ୍କୁ ଏବଂ ଅଗ୍ରଭାଗରେ ଅସଂଖ୍ୟ ବଂଶଧରମାନଙ୍କୁ ଧାରଣ କରି ସ୍ଥିରରହନ୍ତୁ । ଏ ଚରାଚର ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ସମ୍ଭାବନାର ଅତିରିକ୍ତ 'ଅତ୍ୟତିଷ୍ଠତ୍ ଦଶାଙ୍ଗୁଳମ୍' ସହସ୍ରଶୀର୍ଷ ପୁରୁଷ କାଳ ସ୍ରୋତରେ ପ୍ରବିଷ୍ଟ ହେବେ । ଜଗତର ଘଟଣା ପ୍ରବାହରେ ବିଜେ ହେବେ ଜଗନ୍ନାଥ !

ପାତାଳଗର୍ଭରୁ ନଭୋମଣ୍ଡଳ ପର୍ଯ୍ୟନ୍ତ ସମସ୍ୱରରେ ଉଠୁଛି ଜୟଧ୍ୱନି । ଘୁମୁରା ଟେକି ଗୋପାଳମାନେ ନାଚୁଛନ୍ତି । ସହସ୍ର ଶିଙ୍ଗା, ବେଣୁ ବଇଁଶୀ ବାଜି ଉଠୁଛି । ଚଞ୍ଚଳ, ଆନନ୍ଦମୁଖର ହେଉଛି ବଡ଼ଦାଣ୍ଡ । କେହୁ ଉଚ୍ଚକିତ କଣ୍ଠରେ ଗାନ କରୁଛନ୍ତି, 'ଆଗେ ଚଳେ ବଳଭଦ୍ର, ମଧ୍ୟେ ଚାନ୍ଦମୁହିଁ । ପଛେ ଆସୁଛି କାଳିଆ ଗହଳି ଲଗାଇ, ଜଗବନ୍ଧୁ ହେ ଗୋସାଇଁ !' କିଏ ସେ କାଳିଆ ? ସେ ପୁଣି ଆସିବ କଣ ? କେଉଁଠାରୁ କେଉଁଠାକୁ ଆସିବ ? ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ । ସେ ଆସି ସାରିଛି । ସେ ଅତ୍ର ତତ୍ର ସର୍ବତ୍ର ବିରାଜମାନ । ଈଶାବାସ୍ୟମ୍ ଇଦମ୍ ସର୍ବମ୍ । ଅଚଳ ସନାତନ କିପରି ଆସିବ ? ହେ ଉଦ୍ଧବାଦି ଜ୍ଞାନୀଜନେ, ଶୁଣିବା ହୁଅନ୍ତୁ । ଶ୍ରୀମନ୍ଦିର ବେଢ଼ା ଭିତରେ ମନ୍ଦ୍ରନିର୍ଘୋଷ ପରି ଅୟୁତ ଘଣ୍ଟାର ଐକ୍ୟତାନ । ନୀଳାଦ୍ରି ସିଂହ ବିଜେ ହେଉଛନ୍ତି । ଛତ୍ର ଚାମର ଧରି ଆକାଶର ଚୂଡ଼ା ପର୍ଯ୍ୟନ୍ତ ସ୍ତରେ ସ୍ତରେ ବିଭିନ୍ନ ଜ୍ୟୋତିଧାରୀ ମହାତ୍ମାମାନେ ସେବାରେ ନିଯୁକ୍ତ ଅଛନ୍ତି । ଦେବୀକୀର୍ଣ୍ଣ ଆକାଶ । ପୁଲକିତ ଧରିତ୍ରୀ ।

ନବାତ-କନ୍ଦକୁ ପିମ୍ପୁଡି ମାଳ ଲାଗିଲା ପରି ଶ୍ରୀଅଙ୍ଗରେ ସେବକପଂକ୍ତି ଲାଖି ରହିଛନ୍ତି । ଭୂଜତଳେ ଧାଡି ଧାଡି ବଳିଆର ଦଇତାପତି ଭେଣ୍ଡାମାନେ ସମ୍ଭାଳିଛନ୍ତି ।

ଛାମୁରେ ପାଟଡୋର ଭିଡିଧରି ଡାକୁଛନ୍ତି ଲୁହ ସରସର ଭକ୍ତ ସେବକେ- 'ଆ କାଳିଆ ଆ ! ଆ, ଧନ ଆ !! ଆ, ମୋ ସୁନା ଆ !!!' ଆପଣାପଣରେ ବିଗଳିତ ଏ ମହାତ୍ମାମାନେ ଅନେଇଛନ୍ତି ଶ୍ରୀମୁଖକୁ । ବଇଠି ଉପରେ ଟଳମଳ ହେଉଥିବା ଗେହ୍ଲା ପାଟହାତୀପରି ଯା ଉପରୁ ତା' ଉପରକୁ ଆଉଜି ପଡୁଥିବା ଲୀଳାସୁନ୍ଦର କାଳିଆ ସୁନାକୁ ପିଉଛନ୍ତି ସହସ୍ର ଆଖିରେ । ଖଣ୍ଡକ୍ଷୀର-ଲୋଲୁପ ସର-ଲହୁଣୀ ଲୋଭୀ ଏ ଠାକୁର କଥା ସେମାନେ ଜାଣନ୍ତି । କ୍ଷୀରଲୋଭରେ ପିଉପିଉ ବିଷ ପିଇଗଲା, ପିଉ ପିଉ ପ୍ରାଣ ପିଇଗଲା । ସ୍ନେହରେ ବୁଢ଼େଇ ଧରେଇଦେଲେ ଅଇଁଠା କୋଳି ଖାଇଗଲା । ସ୍ନେହ କାଙ୍ଗାଳ, ଭୋକ-ଆତୁରିଆ ମହାପ୍ରଭୁ ଆସିଛି କୋଳେଇ ହେବାପାଇଁ, କାଖହେବାପାଇଁ, ଗଭୀର ସ୍ନେହରେ ଅଧାମ ଖୁଆଇଲେ ଥୁ-ଥୁ କରି ଫିଙ୍ଗିଦେବା ପାଇଁ । ...ଆସ ହେ ଗୋପୀଜନେ, ସମ୍ଭାଳ ଏ ଝୁଲନ୍ତ ହାତୀକୁ, ଆମେ ସେଥିକୁ ଭାଜନ ନୋହୁ । ଆସ ବିଶ୍ୱାବସୁ, କୁଣ୍ଢାଇ ଧର, ଏ ଅମାନିଆ କଳା-କାଇଁଚକୁ; ଆମ ବୁକୁରେ ସେ ବଳ ନାହିଁ ।

ଚାମର ଢଳୁଛି । ଆଲଟ ପଡୁଛି । କସ୍ତୁରୀ ଚଂଦନ ବର୍ଷୁଛି । ଲହୁଣୀ ମେଞ୍ଚା ପରି ପାଟ ଚିମୁଳିକୁ ଇଂଦ୍ରପଦ ଦାନ କରି କରି ପହଣ୍ଡି ବିଜେ ହେଉଛନ୍ତି ନୀଳାଚଳ ଶିଖାମଣି । ଚାହୁଁଛନ୍ତି ସମ୍ରାଟ ଭଙ୍ଗୀରେ ଆତିଳତାରକା- ବିସ୍ତୃତ ବିଶ୍ୱଭୂମିକୁ । ପ୍ରଭୁ, କିସ ବାହୁନିବି ଡୋଳାକୁ ! ଡୋଳା ସୁଂଦର କଜ୍ଜଳ କଳାକୁ । କଜଳର ଲାଞ୍ଜି ଲମ୍ବିଯାଇଛି ଅଦୃଶ୍ୟ କାନ ଯାଏଁ । ଭୁରୁ ଉପରୁ ନଇଁଆସିଛି ବାଘନଖି । କପାଳରେ ଗୋରଚନା ଟୋପା, ଚନ୍ଦନର ଚିତା । ବାସନ୍ତୀ ପାଟ-ଭିଡା, ତୁଳସିମାଳିଆ, ମୟୂରଚୂଳିଆ, ଜଗମୋହନ ସାଆନ୍ତେ ! ବାଇଶି ପାବଛ ଓହ୍ଲେଇବାକୁ ଅଙ୍ଗୀକାର ହୁଅ ।

ଲୋଟିପଡୁଛି ସୂର୍ଯ୍ୟତୋରଣ ପରି ଟାହିଆ । ଝୁଲୁଛି ଚୂଳ । ଝୁଲୁଛି ମାଳ, ଫୁଲର ଝରା ଝୁମ୍ପା । ଡେମ୍ପନାଗରା ବାଜୁଛି । ତୂରୀ, ଭେରୀ, ଘଣ୍ଟ , ଶଙ୍ଖର ବିପୁଳ ଧ୍ୱନି ଭେଦି ଗୁହାରିଆ ଡାକ ପହଞ୍ଚୁଛି ଶ୍ରୀଛାମୁରେ; 'ଝମକିଲା ସିଂହ ପ୍ରାୟେ ଝମକିବା ବିଅର୍ଥ ହୋଇବା ଚକ୍ରପାଣି !" ତର ସହୁନାହିଁ ଠାକୁରଙ୍କୁ । ଆତୁର ଚାତକକୁ ଉତ୍ତର ଦେବାକୁ ନଇଁଆସୁଛି କଳା ଭଅଁର ବର୍ଷନ୍ତ ମେଘ । ଭୋକିଲା ପ୍ରାଣୀମାନଙ୍କୁ ମୁହୂର୍ତ୍ତକରେ ପୂର୍ଣ୍ଣକାମ କରିବାକୁ ଅବତରଣ କରୁଚି କାମନା କଳ୍ପତରୁ । ସିଂହଦ୍ୱାର ଗର୍ଭମଣ୍ଡନ

କରି ପ୍ରଭୁ ଉଦୟ ହୋଇଛନ୍ତି; 'ଉଇଁଆସୁଛିକି ପୂର୍ଣ୍ଣିମା ଶଶି ମଧୁସାଗରୁ !" କୋଟି କୋଟି କଣ୍ଠରୁ 'ନିସ୍ତରିଲି ନିସ୍ତରିଲି' ଡାକ ଜୟ-ଜୟକାର ସହିତ ନିବେଦିତ ହେଉଛି । ଲୋକଗହଳିରେ ବୁଡ଼ିରହି କେହି ଶିଶୁଭକ୍ତ ଆକୁଳ ହେବାରୁ ବାପ ତାକୁ କାନ୍ଧରେ ଟେକି କହୁଛନ୍ତି, 'ହେଇ, ଦେଖ୍ ଠାକୁର। ନମସ୍କାର କର । ଆହେ ପ୍ରଭୁ, ଦରିଦ୍ରକୁ ଦୟାକର ! ଆଡଆଖିରେ ଚାହିଁଥାଅ, ଜଗନ୍ନାଥ ! ୟାକୁ ଦୀର୍ଘାୟୁ କର । ମୋତେ ଉଦ୍ଧାର କର !" ଗୋଟେ ହାତରେ ଅଠାଳିଆ କମଳାକୁଳ, ଆର ହାତରେ ବେଙ୍ଗବାଜା ଧରି ପୁଅ ଜୁହାର ହେଉଛି ତା'ର ଛପନ ପୁରୁଷ ଦିଅଁଙ୍କୁ, ଏ ଜନ୍ମରେ ପ୍ରଥମ ଥର ପାଇଁ। ବେଦାଧ୍ୟାୟୀ ଉଚ୍ଚକଣ୍ଠରେ ବୋଲୁଛନ୍ତି, 'ପୁରୁଷ ଏବେଦଂ ସର୍ବଂ ଯଦ୍‌ଭୂତମ୍ ଯଚ୍ଚ ଭବ୍ୟମ୍ ।' ଏହି ସେହି ଦିବ୍ୟ ଜ୍ୟୋତି ପରମ ପୁରୁଷ ଦାଉ ଦାଉ ଝଟକୁଛି। ଏ ଜ୍ୟୋତିମଣ୍ଡଳରେ ଆଖି ପଖାଳୁଛନ୍ତି ଭାବବିଭୋର ଭକ୍ତମାନେ । ଆର୍ତ୍ତମାନଙ୍କ ଆର୍ତ୍ତି ଶୁଭୁଛି । ଗଜେନ୍ଦ୍ର ସ୍ତବ କରୁଛି: 'ଗହନ ଜଳରାଶିରେ ବୁଡ଼ିଯାଉଛି ପ୍ରଭୁ, ଆରତଭଞ୍ଜନ ହରି, ସଂକଟ ମୋଚନ କର ।' କେହି ଅବଳା ରାଜବଧୂ ଦୁଇବାହୁ ଟୋକି ଡାକୁଛି: 'ରାଜସଭାରେ ନାରୀ ବିବସ୍ତ୍ର ହେବାଠାରୁ ବଳି ଆଉ ବିପତ୍ତି ନାହିଁ , ଦୀନବନ୍ଧୁ ! ମାନରକ୍ଷଣକୁ ମହାବାହୁ ! ଲଜ୍ଜାନିବାରଣକୁ ଚକ୍ରଧାରୀ ! ଅଶରଣ-ଶରଣ, ଅରକ୍ଷରକ୍ଷଣ ଜଗନ୍ନାଥ ! ସଂକଟରୁ ପାରି କର ।" ଆତୁର ପ୍ରାଣୀଙ୍କ କରୁଣ ରୋଦନ ଭାବର ଅଶ୍ରୁରେ ମିଶି ଗଙ୍ଗାବାରି ପରି ଝରିପଡୁଛି । କରୁଣା ସାଗରଙ୍କ ଚକାଡ଼ୋଳା ବାଷ୍ପାକୁଳ ଦିଶୁଛି ଭକ୍ତମାନଙ୍କୁ ।

ସିଂହଦ୍ୱାରରୁ ପ୍ରଭୁ ନିର୍ଗତ ହେଉଛନ୍ତି । ଭୁବନମୋହନ ପହଣ୍ଡିବିଜେ ହେଉଛନ୍ତି ନନ୍ଦିଘୋଷ ସରିକି । ରଥାରୂଢ଼ ହେବେ ପରମ ପାବନ ବିଷ୍ଣୁ । ବିଷ୍ଣୁକ୍ରାନ୍ତା ହେବ ବସୁନ୍ଧରା । ସେବକ ଭକ୍ତଙ୍କର ନିବିଡ ଘର୍ମାକ୍ତ ଆଶ୍ଳେଷରେ ପ୍ରଭୁ ବିଜେ ହେଉଛନ୍ତି । ଏ ସୃଷ୍ଟି ଯା'ର ଖେଳଘର, ଯାହା ଆଜ୍ଞାରେ ଆତଯାତ ହେଉଛନ୍ତି ଚନ୍ଦ୍ର, ସୂର୍ଯ୍ୟ, ସେ ସ୍ଥୂଳ ନୁହେଁ କି ସୂକ୍ଷ୍ମ ନୁହେଁ, ରୂପ ନୁହେଁ କି ଅରୂପ ନୁହେଁ, ପ୍ରକଟ ନୁହେଁ କି ଅପ୍ରକଟ ନୁହେଁ । ଯସ୍ୟଛାୟାମୃତଂ ଯସ୍ୟ ମୃତ୍ୟୁଃ । ସେ ମୂର୍ତ୍ତ ପ୍ରଣବରୂପେ ଘୋଷଯାତ୍ରାରେ ବିଜେ ହେବେ । 'ଲୀଳାୟତୀବ' ଲୀଳା କରିବେ । ସାକ୍ଷୀରୂପ ଚୈତନ୍ୟ-ଚିହ୍ନ-ମାତ୍ର ଚକାଡ଼ୋଳା ବିଜେ ହେଉଛନ୍ତି ନନ୍ଦିଘୋଷର ହୃତ୍‌କେନ୍ଦ୍ରରେ । ଚମକୁଛି ଦେବରଥ । ସୁନ୍ଦର ଦିଶୁଛି ପୃଥ୍ୱୀ । ଆନନ୍ଦ ଗଦ୍‌ଗଦ ହେଉଛି ଅନ୍ତରୀକ୍ଷ । କୃତାର୍ଥ

ମଣ୍ଡୁଛନ୍ତି ଆବ୍ରହ୍ମ କୀଟ ପର୍ଯ୍ୟନ୍ତ ଚରାଚର ସୃଷ୍ଟି । 'ରଥ ଚଉପାଶେ ଲମ୍ବେ ମୁକୁତାର ଝରା । ଝଲମଲ କରୁଛନ୍ତି ପ୍ରଭୁ ଚକାଡ଼ୋଳା ।' ମଣିମା ମଣିମା ଗୁହାରି ଶୁଣିମା ଡାକ ଉଠୁଛି ଚତୁର୍ଦ୍ଦିଗରୁ । କେହ୍ମୁ ସନ୍ଥଜନେ କରୁଣାବିଗଳିତ କଣ୍ଠରେ ନିବେଦନ କରୁଛନ୍ତି; 'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ, ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧାର ହେଉ ।'

'ମୁଁ ପଛେ ଅରଣ୍ୟରେ ପଡିରହେ, ଏ ନୀଳାଚଳ ଏହିପରି ମାଧବ-ସୁନ୍ଦର ହେଉ । ଐଶ୍ୱର୍ଯ୍ୟରେ ଥାଅ ପ୍ରଭୁ ! ଐଶ୍ୱର୍ଯ୍ୟ ବିତରଣ କରୁଥାଅ ଏ ପୃଥ୍ୱୀକୁ । ତୁ ସୁଖରେ ଥିଲେ ମୋର ସୁଖ । ପତ୍ର-ପୁଷ୍ପ-ଫଳ ଏବେ ମଧ ମୋର ସର୍ବସ୍ୱ ଜଗନ୍ନାଥ-ଘେନା ହେଲେ ନିବେଦନ କରନ୍ତି ।'

'ଆମେ ପଛେ ଲୋତକ ସାଗରରେ ବୁଡ଼ିଥାଉଁ, ଲବଣାକ୍ତ ହେଉ ପଛେ ଯମୁନା; ତୁମେ ଇଚ୍ଛାମତେ କାଳ-କାଳକୁ ଚାରି ଦିନର କଣ୍ଟ ପୂରଣ କରୁଥାଅ । ଆମେ ସ୍ନେହସର୍ବସ୍ୱ ଗୋପାଳ । ଲବଣୀ ଦେବାକୁ ଆସିଛୁ; ନେବାକୁ ନୁହେଁ । ଗୋପୀନାଥ ଜଗନ୍ନାଥ ହୋଇ ପ୍ରକଟ ହେଲ । ଜଗତକୁ ବାଣ୍ଟିଦିଅ ଗୋପର ଲୁଣ୍ଠନ । ଜଗତ ପ୍ରୀତିମଧୁର ହେଉ, ସ୍ନେହ କୋମଳ ହେଉ । ଆମେ ଆମର ମଧୁର ପ୍ରତୀକ୍ଷାକୁ ଫେରିଯିବୁ ।'

'ଜଳଧି ଅନ୍ତେ ନିଜ ଗୃହ ଦେବାଧିରାଜ ବୁଡ଼ାଇ ଦେଇଛ ଆପଣ; ଏଣୁ ବିଚିତ୍ର ନୁହେଁ ଘେନ, ଆନଜନର ଘରବୁଡ଼ାପଣ, ହେ ମହାପ୍ରଭୁ । ତମକୁ ଭରସା କଲେ ବୁଡ଼ିଯିବା ସାର ସିନା । ଆକାଶରେ ଆହୁଲା ମାରି କିଏ ନାଆ ଚଳେଇଛି ? ତୁମେ କାହାରି ନଥିଲ, କାହାରି ନୁହଁ । ପବନକୁ ଜାଲରେ ଧରିବାକୁ କିଏ କାହିଁକି ହୁବ କରିବ ? ତୁମେ ତ ଆକାଶ ପରି ଉଦୟ ହୁଅ, ପବନ ପରି ଖସିଯାଅ । ଦୁଃଖ ବାହୁନି ବସିଲେ କିଏ ଶୁଣିବ ? ସବୁ ଅରଣ୍ୟର ସବୁ ମୃଗୁଣୀଙ୍କୁ ଉଦ୍ଧାର କରିବ କିଏ ?'

ଦିଗ୍‌ବଳୟରୁ ଟେକିଆସୁଛି ଆଦ୍ୟ ଆଷାଢ଼ର ମେଘ । ସମୁଦ୍ର ପାଣିରେ ଟଳମଳ । ବତାସରେ କୋଟି କୋଟି ସନ୍ତପ୍ତ ଆତ୍ମାର ଖରଶ୍ୱାସ । ବାଷ୍ପାକୁଳ ସମଗ୍ର ଯାତନାର ଭୂମି । ଦେବଲୋକ ନିସ୍ତବ୍ଧ । ଚକିତ ସ୍ଥଗିତ ନଭଚାରୀ ମରୁତ୍‌ଗଣ । ଋଷି ତପସ୍ୱୀଗଣ ବିସ୍ମୟରେ ହତବାକ୍ । ମୁହୂର୍ତ୍ତେ କଳାଶ୍ରୀମୁଖ ଉପରେ ଲଜ୍ଜାରୁଣ

ବୁଣି ହୋଇଗଲା କି ? ଶ୍ୱେତପଦ୍ମଡୋଳାର କଜ୍ଜଳରେଖା ଉପରେ ଥନଥନ ମେଘପଟଳ ଘୋଡେଇ ହୋଇଗଲା କି ? ଭକ୍ତର ମାନରକ୍ଷଣପାଇଁ ଏତେବେଳେ ବାହୁ ଉଲୁସେଇବାର, ଭୁରୁଟୋଳି ବୁକୁ ଉଭାରିଆଣିବାର ଠାଣି ଯେ ଦେଖୁଛି, ସେ ଦେଖୁଛି ! ସବୁରି ଡୋଳାରେ ସେ ଉଦେହୋଇଯିବାର, ସେ ସ୍ୱୟଂ ଲକ୍ଷ କୋଟି ରୂପରେ ଝଟକିବାର ଯେ ଦେଖୁଛି, ସେ ଦେଖୁଛି !! ଦିଗବିଦିଗ, ଗଗନ ପବନ, ଆକାଶ ପାତାଳ ପୃଥ୍ୱୀ, ଦେବ ଦାନବ, ଭୂତ ଭବିଷ୍ୟତ୍, ଜଡ଼ ଚେତନର ଅନନ୍ତ ବିସ୍ତାର ଉପରେ ସେହିଁ ପରିବ୍ୟାପ୍ତ ହୋଇଯିବାର ଯେ ଦେଖୁଛି, ସେ ଦେଖୁଛି !

'କିବା ଏ ପ୍ରାଣୀ ? କିବା ତାଙ୍କର କଷଣ ? କିବା ଦ୍ୱନ୍ଦ୍ୱ ? କିବା ଆର୍ତ୍ତି ? ମତ୍ତଃ ପରତରଂନାନ୍ୟତ୍ କିଞ୍ଚିଦସ୍ତି ଧନଞ୍ଜୟ !' ମହାଦୀପନର ସୂକ୍ଷ୍ମ ଶିଖାଟିଏ ନିବେଦନ କରୁଛି; 'ମୁଁ ସିନା ଚିର ଅପରାଧୀ, ତୁ ନାଥ କରୁଣାବାରିଧି ।' ବିସ୍ମୟ-ବିହ୍ୱଳ ହୋଇ କହୁଛି; 'ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ । ହେ କୃଷ୍ଣ, ହେ ଯାଦବ, ହେ ସଖେତି । ଅଜାନତା ମହିମାନଂ ତ ବେଦଂ। ମୟା ପ୍ରମାଦାତ୍ ପ୍ରଣୟେନବାପି ।'

କୁରୁକ୍ଷେତ୍ରରେ ବିଶ୍ୱରୂପ ଦର୍ଶନ କରି ବିମୂଢ଼ ଭକ୍ତ ବିନୟ ଏବଂ ସମ୍ଭ୍ରମରେ ନିଉଛାଳି ହୋଇ କହୁଛି- ହେପ୍ରଭୁ ! ତୋତେ ନ ଜାଣି, ବନ୍ଧୁଭାବରେ ଚପଳତାରେ ଅପରାଧ କରିଛି, ସଖା ବୋଲି, କୃଷ୍ଣ, ଯାଦବ ବୋଲି ସମ୍ବୋଧନ କରିଦେଇଛି । ହେ ପରମତତ୍ତ୍ୱ ପୁରୁଷ, ଧୃଷ୍ଟତା କ୍ଷମା ହୋଇଯାଉ ।

ଚାରିଆଡ଼େ ବିନମ୍ର ଭକ୍ତଙ୍କର ଅଞ୍ଜଳ ନିବେଦନ । ଦ୍ୟାବା, ଅନ୍ତରୀକ୍ଷ, ପୃଥିବୀ, ସ୍ତବ୍ଧ ! ଚକିତ !!

□□□

⊙

ପରମ ପାବନ ମୁହୂର୍ତ୍ତରେ ରଥାରୂଢ଼ ହୋଇ ଶୋଭାପାଉଛନ୍ତି ବାମନ ବିଷ୍ଣୁ । ଅସମ୍ଭବ ସମ୍ଭବିଲା ପରି ବେଦାନ୍ତ-ବେଦ୍ୟ ପୁରୁଷ ପ୍ରକଟ ହୋଇଛନ୍ତି ଅର୍ଦ୍ଧାକାଶରେ । ବଡ଼ଦାଣ୍ଡରେ ଅଗଣିତ ଭକ୍ତଜନଙ୍କର ଭାବସମୁଦ୍ରରେ ଚନ୍ଦ୍ରୋଦୟ ଘଟିଛି । ଉଲ୍ଲସିତ ପଦ୍ମବନରେ ଉଦୟ ହୋଇଛନ୍ତି ସବିତା । ପ୍ରଭୁ ବିଜେ ହୋଇଛନ୍ତି । 'ଧରଣୀ ମଣ୍ଡିଲା ପରାଏ ହୋଇଛନ୍ତି କି ଉଭା । ଧଳା କଳା ବେନି ଭାଇ ଗୋ ଦୁହେଁ ଦୁହିଁକି ଶୋଭା ।' ଚାତକର ଆକାଶକୁ ଆଚ୍ଛନ୍ନ କରି ରଖିଛି ମଧୁକ୍ଷରା କାଦମ୍ବିନୀ । ଦୁଗ୍ଧାମ୍ବରା ଗାଭୀ ପରି ଅହେତୁକୀ କୃପା ଆଦିପ୍ରଣବ ରୂପରେ ଟଳମଳ ହେଉଛନ୍ତି । ଅହୋଭାଗ୍ୟ ମଣୁଛନ୍ତି କୃତାର୍ଥ ଭକ୍ତଜନେ । ବସ୍ତୁ ସଂଘରେ ବିମୂଢ଼ ଚର୍ମଚକ୍ଷୁ ଶଙ୍ଖନାଭି ମଣ୍ଡଳରେ ପଖାଳି ହୋଇ ଚାହିଁ ରହିଛି ଆଶ୍ଚର୍ଯ୍ୟବତ୍ ଉତ୍ତମ ରହସ୍ୟକୁ । ପ୍ରଭୁ ବିଜେ ହୋଇଛନ୍ତି । ବିଜେ ହୋଇଛନ୍ତି ନୀଳାଦ୍ରିନାଥ କୈବଲ୍ୟ ଧାମରୁ । ବାହୁ ପ୍ରସାରି ଅଙ୍ଗୀକାର କରିଛନ୍ତି ପ୍ରତ୍ୟେକ ପ୍ରଣତ ଆତ୍ମାର ଭାବ ସଂପର୍କ । ପିତା, ମାତା, ସଖା, ସୋଦର, ଭ୍ରାତା ଭର୍ତ୍ତା ରୂପେ ଘନିଷ୍ଠତମ ଆଶ୍ଲେଷରେ ଧରା ଦେଇଛନ୍ତି ଦୂରଙ୍ଗମମ୍ ଜ୍ୟୋତିଷାଂ ଜ୍ୟୋତିରେକମ୍ ! ଚେତନାର କେନ୍ଦ୍ର ଏବଂ ଦିଗଚକ୍ରକୁ ଆଚ୍ଛନ୍ନ କରି, ଦୂରତମ ଏବଂ ନିକଟତମକୁ ଏକାକାର କରି, କ୍ଷରାକ୍ଷର ପୁରୁଷୋତ୍ତମ ବଡ଼ଦାଣ୍ଡରେ ଉଭା ହୋଇଛନ୍ତି । ଦେବଦୁର୍ଲଭ ମାହେନ୍ଦ୍ର ବେଳାରେ ସ୍ଥାବର ଜଙ୍ଗମ ଜଡ଼ ଚେତନ ଜଳ ସ୍ଥଳ ଆକାଶରେ ଅଜସ୍ର କୃତକୃତ୍ୟତା, ନିସ୍ତରିଲି ନିସ୍ତରିଲି ଭାବର ପୁଲକ । ଦେହ ପିଣ୍ଡଟିକୁ ଆଦର କରି ମନ ଚୈତନ୍ୟ କହୁଛନ୍ତି 'ଟେକିବାରେ ଚାହାଁ ମଥୁରା ଦାଣ୍ଡେ ଗୋବିନ୍ଦ ବିଜେ ।'

ସତେ ଆସି ବିଜେ ହେଲ ସାଆନ୍ତେ ? ସତେ ଏ ପାପ ଆଖି ଗଙ୍ଗା ସ୍ନାନ କଲା ? ଦହି ଦୁଧ ସରଖିଆ ଏ କୋଟି ଲାବଣ୍ୟରୂପ ଧ୍ୟାନ କରି କରି ଯୁଗ ବିତି ଯାଇଥିଲା ପ୍ରଭୁ ! ସମୁଦ୍ର ହୋଇଥିଲା ଯମୁନା । ଜୁଆର ତୋଳୁଥିଲା ଅଶ୍ରୁ । ଭରସା

ନଥିଲା ଏ ଘନ ଘୋର ଅନନ୍ତ ରାତ୍ରି ପାହିବ ବୋଲି । ଜଗନ୍ନାଥେ, ହୋ ! କାନ ନଥାଇ ମଣିମା ଗୁହାରି ଶୁଣନ୍ତି ବୋଲି ଥୋକେ କହୁଥିଲେ । ହେଲେ ଭରସା ଖଟୁ ନଥିଲା । ପାଣି ପାଦ ନଥାଇ ରତ୍ନ ସିଂହାସନରୁ ବିଜେ ହୋଇ ଆସିଲ । ଏ ଅଧମକୁ କୃତାର୍ଥ କଲ ପ୍ରଭୁ । କାହା ଡାକ କେମନ୍ତେ ଶୁଣିଲ, ମୁଁ କି ଭାଜନ ବୁଝିବାକୁ ! ଇଚ୍ଛାମୟ ଇଚ୍ଛାରେ ପ୍ରକଟ ହେଲ । କରୁଣା ବାରିଧି ଲହଡି ମାରୁଛି । ମୁଁ ତୋତେ କିଛି ମାଗୁନାହିଁ । ଜଗନ୍ନାଥ । ଚିର ଅପରାଧୀ ମୁଁ । ବୁନ୍ଦାଏ ଛିଟିକି ଆସିଲେ ପ୍ରାଣପକ୍ଷୀ ଶୀତଳ ହୋଇଯାନ୍ତା । ମୋର ଏଡ଼େ ଭାଗ୍ୟ ହେବ କି ? ତୋର ସେବାକୁ ଅଭାଜନ, ମୁଁ ଶରଧା ବାଲିରେ ଲୋଟୁଥାନ୍ତି । ତୋତେ ଚାହିଁ, ତୋର ଭକ୍ତଜନଙ୍କ ପାଦପଦ୍ମ ପଖାଳି ଦିଅନ୍ତି । ତୋର ପାଦ ତ' ବ୍ରହ୍ମଙ୍କୁ ଗୁପତ, ମୁଁ କି ଛାର ତାକୁ ଠାବ କରିବାକୁ । ଶୁଣିଥିଲି ଯେ ତାହାରି ଇଚ୍ଛାରେ ମହିମାମୟ ହିମବନ୍ତ ଅଚଳ ପ୍ରତିଷ୍ଠିତ ଅଛନ୍ତି, ରସୋଚ୍ଛ୍ୱାସରେ ନୀଳାମ୍ବୁରାଶି 'ସ୍ୱେ ମହିମ୍ନି' ଲୀଳାୟିତ ହେଉଛନ୍ତି । ଦିଗ୍‌ବିଦିଗରେ ତାହାରି ଅଗଣିତ ବିକ୍ରାନ୍ତ ଭୂଜବିସ୍ତୃତ ହୋଇରହିଛି । ଖୋଜୁଥିଲି ସେ କିମ୍ଭୁତ ଆଦିପୁରୁଷଙ୍କୁ । କାହାକୁ ହବି ଅର୍ପଣ କରିବି ବୋଲି ଶୂନ୍ୟକୁ ଚାହିଁ ପ୍ରଶ୍ନ କରିଥିଲି । ପଚାରିଥିଲି ସେ ଅଛି ନା ନାହିଁ ବୋଲି । ଶୂନ୍ୟ ଚୈତନ୍ୟମୟ ହୋଇ ଚତୁର୍ଦ୍ଦିଗରୁ ଘଣ୍ଟାଘୋଷରେ ଉତ୍ତର ଦେଉଛନ୍ତି 'ଅସ୍ତି... ଭାତି' ! ସେ ଅଛି, ଅବଶ୍ୟ ଅଛି । ହେଇ ସେ ଜାଜ୍ୱଲ୍ୟମାନ ଝଟକୁଛି ! ବହୁ କାଳରୁ ଟେକି ରଖିଥିବା ହବି ଅର୍ପଣ କରୁଛି, ହେ ଯଜ୍ଞ ପୁରୁଷ, କୃପା ପରବଶ ହୋଇ ଗ୍ରହଣ କରନ୍ତୁ ।

ଭୂଲୋକରୁ ସତ୍ୟ ଲୋକ ଯାଏଁ କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସିଦ୍ଧ ଗନ୍ଧର୍ବ ବିଦ୍ୟାଧର, ମୁନି, ଋଷି ଯକ୍ଷ, ରକ୍ଷ, ଦେବତା କୃତାଞ୍ଜଳି ହୋଇ ସ୍ତବ ଗାନ କରୁଛନ୍ତି । ଆକାଶରେ ବଜ୍ର ଗମ୍ଭୀର ଘୋଷ ! ଶିଙ୍ଗା, ପଟହ, ଡମ୍ବରୁ, ଖେମଟା କରତାଳି ସହିତ ବୀଣା ନୂପୁର ନାଦ ଏବଂ ମହିମ୍ନ ଦେବଧ୍ୱନି ନିବେଦିତ ହେଉଛନ୍ତି । ମଣିଷ ସ୍ୱରରେ ସ୍ଫୁଟଅସ୍ଫୁଟ ପ୍ରକଟ ଅପ୍ରକଟ ଭାଷାରେ ଅସଂଖ୍ୟ ପ୍ରାଣର ଆକୁତି ସହିତ ଧ୍ୱନିତ ହେଉଛି ଅସଂଖ୍ୟ ବାଦ୍ୟ ଘୋଷ । ଠାବେ ଠାବେ ଗୋଳ ଚହଳ ବେଣୁ ଶିଙ୍ଗା ବଇଁଶୀ । 'ମହୋଦଧି' ସହସ୍ରେ ମହାଶଂଖର ଘୋଷରେ ନିବେଦନ କରୁଛନ୍ତି । ଅସଂଖ୍ୟ ଘୋଷର ତୁମୁଳ ନିର୍ଘୋଷ ଛନ୍ଦରେ ନନ୍ଦିଘୋଷ ସ୍ପନ୍ଦିତ ହେଉଛି । ଅତି ସୁସଜ୍ଜ ରଥପିଣ୍ଡ ନିର୍ମାଣିଛନ୍ତି ବିଶ୍ୱକର୍ମା । ସେଥିରେ ରଥୀ ଅନୁପ୍ରବିଷ୍ଟ ହେଲାପରେ ଚୈତନ୍ୟମୟ

ହୋଇଛି ସୃଷ୍ଟି । ସାର୍ଥକ ହୋଇଛନ୍ତି ଅଭିମାନୀ ଦେବତାମାନେ । ଆଚମ୍ବିତ ଜଗତ୍ ସ୍ତବ୍ଧ ହୋଇ ଅପେକ୍ଷା କରିଛି ଜଡ଼ ଚେତନର ଏ ଅଦ୍ଭୂତ ସମାହାରକୁ । ଏ ବିପରୀତ ତତ୍ତ୍ୱ ଏକତ୍ର କ୍ରିୟାଶୀଳ ହେବେ କି ସ୍ତମ୍ଭିତ ହୋଇ ରହିଯିବେ ? କିଏ କାହାକୁ ଚାଳିତ କରିବ ? ଜଗତର ଶିଖରରୁ ଗହ୍ୱରକୁ ଗମନ କରିବ କିଏ ? ଘୋଷ ଯାତ୍ରାର ଆନନ୍ଦ ବିଭୋର ଘଣ୍ଟା ଘୋଷରେ ଶୁଭୁଛି 'ସେ, ସେ, ସେ ! ସେ ହିଁ ଅବତରଣ କରୁଛି । ସେ ସ୍ୱୀକାର କରିଛି ଏ ଯାତ୍ରା । ନୀଳାଚଳ ଶୀର୍ଷରୁ ନଦୀଗର୍ଭ ପର୍ଯ୍ୟନ୍ତ । ଜଡ଼କୁ ଧାରଣ କରି ଚୈତନ୍ୟର ପ୍ରସ୍ଥାନ ଯାତ୍ରା । ସେ ସ୍ୱୀକାର କରିଛି ଜଡ଼ର ମେଦ ମଜ୍ଜା ଭେଦ କରି ତାର ମର୍ମ ସ୍ପର୍ଶ କରିବାକୁ, ବହୁଧା ବିକୀର୍ଣ୍ଣ ଜଡ଼ରେଣୁରେ ସ୍ୱୟଂ ବାସ କରିବାକୁ; ଜଡ଼କୁ ଜୀବନ୍ୟାସ ଦେବାକୁ; ସୁଖ ଦୁଃଖରେ କ୍ଷେପଣ କରି ପୁନଶ୍ଚ ଉଦ୍ଧାର କରିବାକୁ, ଜୀବ ରୂପରେ ଭୋଗିବାକୁ, ସାକ୍ଷୀ ରୂପରେ ନିଷ୍ପଲକ ଚାହିଁ ରହିବାକୁ; ମୃତ୍ୟୁକୁ ସୃଷ୍ଟି କରି ତା ଭିତରେ ଅମୃତକୁ ମନ୍ଥନ କରିବାକୁ । ସେ ସୃଷ୍ଟି, ସେ ସୃଜନ, ସେ ସ୍ରଷ୍ଟା। ତଟସ୍ଥ ରହି ଚାହିଁଥାଅ ପୁରଜନେ । ସେ ରେଣୁ ରେଣୁରେ ପୂରିତ ହେବ। ତ୍ରିଗୁଣ ରଜ୍ଜୁରେ ଚଳମାନ ହେବେ ରଥାରୂଢ଼ ବିଷ୍ଣୁ । ସମୁଦ୍ର ଇଚ୍ଛା କରିଛି ଲୀଳାୟିତ ହେବ, ତରଙ୍ଗରେ ପ୍ରବାହିତ ହେବ ! ସଦାସଂଯୁକ୍ତ ଏକକ ସମୁଦ୍ର ଅସଂଖ୍ୟ ବିଯୋଗର ଅବଲୀଳା ପ୍ରଦର୍ଶନ କରିବ ।

ଦିବ୍ୟ ରଥମାନ ଝଲମଲ କରୁଛନ୍ତି । ଭୃରୁଟେକି ପ୍ରସନ୍ନ ମୁଦ୍ରାରେ ସାରଥୀମାନେ ବାଗ ଦଉଡ଼ି ଭିଡି ଧରିଛନ୍ତି । ଯୋଚା ହୋଇଥିବା ସୁଲକ୍ଷଣ ଅଶ୍ୱମାନେ ଟାଣିହୋଇ ରହିଛନ୍ତି । ଛାଡି ଦେଲେ ଚକ୍ଷୁ ମଟକେ, ଅତି ଛଟକେ ସ୍ୱର୍ଗ ସୀମା ବଳିଯିବେ । କୌଣସି ସଙ୍କେତକୁ ଅପେକ୍ଷା କରି ରହିଛନ୍ତି ତ୍ରିଭୁବନ । ଅପେକ୍ଷା କରିଛନ୍ତି ମହତୀ ସ୍ୟନ୍ଦନମାନେ । ବସୁଧାର ତପୋମଗ୍ନ ଚେତନା ବଡ଼ଦାଣ୍ଡରେ ଉତ୍ଥାନ୍-ଅପେକ୍ଷା କରିଛନ୍ତି । ଭକ୍ତମାନେ ଚାହିଁ ରହିଛନ୍ତି । ଠେଲାପେଲା ଗହଳି ଭିତରେ ସତ୍ୟ, ଦ୍ୱାପର, କଳି ଗୁନ୍ଥି ହୋଇ ରହିଛନ୍ତି । ଦେହର ମଳିଝଳି ପରି ଚେତନାରେ ଶୁଦ୍ଧା-ଶୁଦ୍ଧ ମଣିଷମାନେ ସାନ ବଡ଼ ଭୁଲିଯାଇ ଗୋଳି ହୋଇଛନ୍ତି । ସମସ୍ତଙ୍କ ଆଖି ଉପରକୁ; ମନ ଉପରକୁ ଘିଅ ଦୀପ ପରି ଟେକିହୋଇ ଜଳୁଛି ଦୃଷ୍ଟି । ମୁଣ୍ଡରେ ଜଟାଭାର ବୋହି ଭସ୍ମ ଲେପିତ କୌପୀନବନ୍ତ ପୁରୁଷ ଜଣେ ଏକାକୀ ଠିଆ ହୋଇ ଦେବ ଦର୍ଶନ କରୁଛନ୍ତି । ତାଙ୍କ ପାଖକୁ ଘେରି ଠିଆ ହୋଇଛନ୍ତି ହାତ ଧରାଧରି, କାନି ଧରାଧରି

ହୋଇ, କାଚ ଝମଝମ କରୁଥିବା, କାଲୁରୁ କାଲୁରୁ ହେଉଥିବା, ତେଲ ଜୁଡୁବୁଡୁ ମୁଣ୍ଡ, ଦଣ୍ଡିପିନ୍ଧା ନାକଝାଡ଼ି, ଡକାହକା ହୋଇ ପୁରସ୍ତମ ଆସି ଠାକୁରକୁ ଦେଖି ଦେଖାଉଥିବା, ଗାଁ ମାଇପେ । ତାଙ୍କୁ ଘେରି ନୁଖୁରି ମୁଣ୍ଡି ହସକୁରି ପାଞ୍ଚହାତ ନାଲି କସ୍ତା ଗୁଡ଼େଇହୋଇ ଫୁକୁରୁ ଫୁକୁରୁ ଡେଉଁଥିବା କଣ୍ଡେଇ ପରି ଗାଁ ଝିଅଗୁଡ଼ିକ । ସବା ଆଗରେ ସମସ୍ତଙ୍କ ମାଉସୀ ହାତ ଯୋଡି ଥନଥନ ଆଖିରେ ଚାହିଁଛି ରଥ ଗମ୍ଭୀରାକୁ । ତା' ବାହୁରେ ବିଦମାଳ । ଚିତାକୁଟା ଚମ ଧୁଡୁ ଧୁଡୁ ଡେଣା । "ମତେ ଏ ଜଞ୍ଜାଳରୁ ନେଇଯା ଠାକୁର । ମଥାରୁ ସିନ୍ଦୂର ଲିଭେଇଲୁ । ମୋ ଗୁଣ୍ଡୁଣି ହାତୀକୁ ଛଡ଼େଇନେଲୁ । ମାରିଦେ, ଠାକୁର ମତେ ମାରିଦେ ।' ବୋହୂ ଭୁଆଷୁଣି ହାତକାଚ ବଜର ହେବାକୁ ନିଉଛାଳି ହେଉଛନ୍ତି । ରଥ ଦଉଡ଼ିରୁ ଶିଆଳି ଶିଅ ଛିଣ୍ଡାଇ ଘରେ କଖାରୁ ଡଙ୍କରେ ବାନ୍ଧିବାକୁ ମନ କରୁଛନ୍ତି ।

ସମୁଦ୍ର ପରି ଘୁ' ଘୁ' ଶଙ୍ଖନାଦ ଭିତରେ ଘଣ୍ଟୁଆ ଧାଡିବାନ୍ଧି ଛନ୍ଦ ତୋଳିଲେ । ଡାହୁକ ବେତ ଧରି ରଥ ମଙ୍ଗ ଆବୋରିଲେ । ଚଉଦଚକ ଉପରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ଭାର ବହନ କରି ତାଳଧ୍ୱଜ ମୃଦୁ କମ୍ପିତ ହେଲା । ଶୁଭଙ୍କର ଅନୁକୂଳ ପବନରେ ଧ୍ୱଜା ଲହରିତ ହେଲା । ଶିଶୁ ବାସୁକି ପରି ତିନୋଟି ରଥ-ରଜ୍ଜୁ ଲମ୍ବି ଆସିଲେ ବଡ଼ଦାଣ୍ଡ ଉପରକୁ । ବଇଠି ଉପରେ ଚୂଳମାଳ ବିଭୂଷିତ, ମତ୍ତ ମାତଙ୍ଗ ଠାଣିରେ ଦରହସିତ ଚାହିଁଥିବା ଠେକାଭିଡ଼ା ଠାକୁରେ ! ଚନ୍ଦନ ପଙ୍କରୁ ଉଠିଆସିଥିବା ଲୀଳାଟପଳ ଶ୍ୱେତ ହସ୍ତି ବାହୁ ତୋଳି ଉହୁଙ୍କି ଆସୁଛି । ବିପୁଳ ବକ୍ଷ ଉପରେ ବିଚିତ୍ର ବର୍ଣ୍ଣର ପୁଷ୍ପପଦକ । ବଳିଆର ଭୁଜ ଉପରେ ରାଶି ରାଶି ଫୁଲମାଳ । ଡାହୁକ ଡାକିଲେ । ଭକ୍ତେ ଟେକିଲେ ବିମାନ ରଜ୍ଜୁ । ରଥ ଦୁଲୁକିଲା । ଠାକୁରେ ଉଲୁସିଲେ । ବିସ୍ତୃତ ବିଜେମାର୍ଗ ଉପରକୁ ଗୁମୁଗୁମୁ ଘୋଷରେ ପ୍ରତିଧ୍ୱନିତ କରି ଚଳିଗଲେ ତାଳଧ୍ୱଜ । ମକର କୁଣ୍ଡଳ ଝମକିଲା । ଚନ୍ଦ୍ରଚିତା ଝଲମଲ ହେଲା, ମୃଦୁ କମ୍ପିତ ହେଲେ ବିସ୍ତୃତ ବାହୁ ଯୁଗଳ । ସ୍ଥାଣୁ ପୁରୁଷ ଗତି ଛନ୍ଦରେ ଆମୋଦିତ ହେଲେ । ସକଳ ଦିଗକୁ ଅତିକ୍ରମ କରିଥିବା ଅନନ୍ତ, ଉଚ୍ଚନୀଚ ଭୂମିର ଦୋଳନରେ ସ୍ପନ୍ଦିତ ହେଲେ । ଅଳକନନ୍ଦାଙ୍କର ବିଶୁଦ୍ଧ ଧାର ପରି ଓହ୍ଲାଇ ଯାଉଛନ୍ତି ରଥାରୋହୀ ବଡ଼ଠାକୁରେ । ବ୍ରଜ ଦାଣ୍ଡରେ ସୁନ୍ଦା ଢାମୁତାଳି ନାଚରୁ କରଛଡ଼ା ଦେଇ ଲାଜକୁଳା କଳଭ ପରି ଆପଣ ବିଜେ ହେବା ମୁନିଜନମାନେ ଦେଖୁଛନ୍ତି । ଚପଳ ହେଲେ ଉଦ୍ୟତ-ଲାଙ୍ଗଳ

ସଂଗ୍ରାମୀ ରୂପରେ ଆପଣ ଯୁଦ୍ଧ ଭୂମିକୁ ମର୍ଦ୍ଦନ କରିବା କଥା ଦେବତାମାନେ ସାକ୍ଷ୍ୟ ଦାନ କରନ୍ତି । ମହାକାଶ କମ୍ପିତ ହୋଇ ଜାଣନ୍ତି ନାହିଁ । ହେ ଅନନ୍ତ ମହାପ୍ରଭୁ, ଲୀଳା ମଧୁର ହୋଇ ଅନୁଗତମାନଙ୍କ ଦ୍ୱାରା ଆକର୍ଷିତ ତାଳଧ୍ୱଜର ମୃଦୁକମ୍ପନକୁ ଆପଣ କଉତୁକ ମଣି ସଲଜ୍ଜ ସ୍ୱୀକାର କରୁଥିବା ଦୃଶ୍ୟର ପଟାନ୍ତର ନାହିଁ ମଣିମା, ଅଚଳ ଚଳିବାର ଏ ଚଳାଚଳ ଦୃଶ୍ୟର ପଟାନ୍ତର ନାହିଁ !

ବିଶୁଦ୍ଧ ଗଙ୍ଗାଧାର ସହିତ ତ୍ରିବେଣୀ ସଙ୍ଗମରେ ସୁକ୍ତିମତୀ ସରସ୍ୱତୀ ପରି ଦେବଦଳନ ପ୍ରବାହିତ ହେଉଛନ୍ତି । କାନ୍ତି, ଦ୍ୟୁତି, ଶକ୍ତି, ଦ୍ୱାଦଶ ଆଦିତ୍ୟଙ୍କ ତେଜରେ ବିଚ୍ଛୁରିତ ହୋଇ ଯାଉଛନ୍ତି ଅନନ୍ତ ବ୍ରହ୍ମାଣ୍ଡରେ । ମହାଶୂନ୍ୟରେ ଆଦ୍ୟାଶକ୍ତିଙ୍କର ସଞ୍ଚାର ହେବା ସୃଷ୍ଟିର ଆଦିମତମ ସୂଚନା । ଇଚ୍ଛାରେ ତରଙ୍ଗ ସୃଷ୍ଟି ହେଲାପରି ସୁବର୍ଣ୍ଣବର୍ଣ୍ଣା ସୁଭଦ୍ରା ବିଚିତ୍ର ଛନ୍ଦରେ ଦୋଳାୟିତ ହୋଇ ବଳରାମଙ୍କ ଅନୁବର୍ତ୍ତିନୀ ହୋଇଛନ୍ତି । ଅବତରଣ କରୁଛନ୍ତି ସ୍ୱୟଂ ମାହେଶ୍ୱରୀ । ତପସ୍ୟାର ଶୁଦ୍ଧ ଗାମ୍ଭୀର୍ଯ୍ୟପରେ, ସମ୍ବତ୍ସରମାନଙ୍କୁ ଗର୍ଭରେ ଧାରଣ କରି କାଳରାତ୍ରୀ ଅବତରଣ କରୁଛନ୍ତି । ଅନନ୍ତ ଜ୍ୟୋତିର୍ମୟୀ, ଅନନ୍ତ ଶକ୍ତିମୟୀ ତେଜୋମୟୀ ବିଶ୍ୱ ଜନନୀ ସୁଭଦ୍ରେ ! ତୁମର ଅନନ୍ତ ଯାତ୍ରା ପଦ୍ମମଣ୍ଡିତ ହେଉ ! ତୁମର ସ୍ପର୍ଶରେ ଜଡ଼ର ଜାଡ୍ୟ ଅପସାରିତ ହେଉ; ସେ ବିଚାରବନ୍ତ, ଆସ୍ପୃହାବନ୍ତ ହେଉ ।

ଆଉ ହୋଇଯାଅ, ଯେ ଯେଉଁଠି ଅଛ, ହୋ ବଡ଼ଦାଣ୍ଡିଆ ଭଗତେ, ମାଲିକେ ବିଜେ ହେଉଛନ୍ତି- ନନ୍ଦି ଡାକିଲାଣି ଶୂନ୍ୟରେ । ଦକ୍ଷିଣା ପବନରେ ନେତ ଉଡ଼ିଲାଣି । ତ୍ରିଗୁଣ ରଜ୍ଜୁକୁ ଆଣ୍ଟେ ଭିଡ଼ି ଧରିଥାଅ, ଭଗତେ, ଦିଶୁଥାଉ ତୁମେ ତାଙ୍କୁ ବାନ୍ଧିଛ ବୋଲି । ଦିଶୁଥାଉ ତୁମେ ତାଙ୍କୁ ଚଳାଉଛ ବୋଲି । ଅନେକ ହୁନ୍ଦର ଜାଣିଥିବା କୂଟ କପଟିଆ ନାଟର ଗୋବର୍ଦ୍ଧନ ସେ ! ଆଖିମିଟିକା ମାରି ଚାହିଁଲେ ଜଣାଯିବ 'ତ୍ରିଗୁଣ ରଜ୍ଜୁ କରେ ଧରି, ମୃଗୀ ନଚାଏ ନରହରି ।' ଷୋଳଚଳ ରାଉ ରାଉ ଡାକୁଛି । ମନ୍ଦର ଗିରି ପରି ନନ୍ଦିଘୋଷ ଗୁମୁଗୁମୁ କମ୍ପୁଛି । ଅବ୍ୟକ୍ତ ସନାତନ ବ୍ୟକ୍ତ ଭୂମିରେ ପ୍ରବେଶ କରୁଛନ୍ତି, ଉଦେ ହେଉଛନ୍ତି ସୂର୍ଯ୍ୟ । ସେ ଅବତରଣ ନ କଲେ ଉତ୍ତରଣର ମାର୍ଗ ଦିଶିବ ନାହିଁ । ସଂସାରରେ ସବୁଠାରୁ କଠିନତମ ଗ୍ରନ୍ଥି ସେ ଭେଦିଯିବେ, ସବୁଠାରୁ ଦୁର୍ବହ ସୁଖ ଦୁଃଖର ଭାର ସେ ନିଜେ ବହନ କରିବେ । ଦୁର୍ଲଂଘ୍ୟ ସଙ୍କଟ ପାରି ହୋଇଯିବେ । ସଂସାରର ଅପରିମେୟ ଜ୍ୱଳମାନ ଯଜ୍ଞକୁଣ୍ଡରେ ପରମ ପୁରୁଷ

ପଶୁପରି ପ୍ରୋକ୍ଷଣ ହୋଇଯିବେ । ନହେଲେ ଜଗତ୍ ଉଦ୍ଧାର ହେବ କିପରି ? ସେ ସ୍ୱେଚ୍ଛାରେ ଅବତରଣ କରୁଛନ୍ତି । ଆଡ ହୋଇଯାଅ । ରହିଥାଅ ଏ ମହାରଜ୍ଜୁରେ ଗୁନ୍ଥିହୋଇ । ତୁମେ କି ଭିଡ଼ିବ ରଥ ! ପ୍ରତି ସ୍ପର୍ଶରେ ଷୋଳ ପାଖୁଡ଼ା ପଦ୍ମ ଉକୁଟାଇ ସେ ନିଜେ ଗଡିଯିବ, ନୀଳାଦ୍ରି ଶିଖରରୁ ଶରଧା ବାଲିଯାଏଁ !

ଅପ୍ରାକୃତ ପ୍ରେମ ମୂର୍ତ୍ତି ମଧୁବର୍ଷା କରୁଛନ୍ତି ନନ୍ଦିଘୋଷ ଉପରୁ । ମହାଭାବର ଯମୁନା ବହିଯାଉଛି ରଥ ପ୍ରବାହରେ । ପ୍ରେମରେ ଢଳଢଳ ଲାବଣ୍ୟନିଧି ନାନା ବିଚିତ୍ର ଭଙ୍ଗୀରେ ଝୁଲୁଛନ୍ତି । ରଥ ଦୋହଲୁଛି ବିଚିତ୍ର ଭଙ୍ଗୀରେ । ଲାଜ ଭୟ ଅଭିମାନ ତେଜି କୁଢେଇ ହୋଇ ପଡିଛନ୍ତି ଲକ୍ଷଲକ୍ଷ ଅନୁଗତ ଭକ୍ତ । ଯମୁନାରେ ନିରାବରଣ ଠିଆ ହୋଇଛନ୍ତି ବିମୁଗ୍ଧ ଆତ୍ମାଗୁଡ଼ିକ । 'ଯେ ଯେତେ କହନ୍ତୁ ନିନ୍ଦା କୁବଚନ, ଗଣ୍ଠିଧନ ମୋର କାଳିଆ କାଞ୍ଚନ, ମୁଁ ତ କିଣା କିଙ୍କରୀ ତାହାର ଲୋ, ମୁଁ ତ କୁଳରୁ ହେଲି ବାହାର ଲୋ' ତାଙ୍କୁ ଚାହିଁ ହସୁଛନ୍ତି ଚୀରଚୋରା ଗୋପୀନାଥ । ନାନା ରୂପର ନିର୍ମୋକ ଖସି ପଡିଲେ ନାନାଦ୍ୱର ପ୍ରତ୍ୟୟ ଓଦା ଲୁଗାଟିଏ ପରି ଖସି ପଡିଲେ, ସର୍ବତ୍ର ସେଇ ଢଳଢଳ ଦୁଇଟି ଚୈତନ୍ୟ ଚିହ୍ନମାତ୍ର ଚକାଆଖି ଚାହିଁ ରହିଛି । ମହାତ୍ମାଙ୍କୁ ଦିଶୁଛି, ରଥ ସେହି, ରଥୀ ସେହି, ସାରଥୀ, ଅଶ୍ୱ, ଅଶ୍ୱରଜ୍ଜୁ ସେଇ, ରଥ ଦଉଡ଼ି, ଦଉଡ଼ି ଧରିଥିବା ଅସଂଖ୍ୟ ନରନାରୀ, ବିଜେ ଦାଣ୍ଡ, ନବର ଅଟ୍ଟାଳି ସବୁ ସେଇ । ସର୍ବତ୍ର ବାସୁଦେବ, ସର୍ବମୟ ବାସୁଦେବ !! ମୁହଁ ମେଲେଇ ଦେଲେ ଗର୍ଭରେ ଚଉଦ ବ୍ରହ୍ମାଣ୍ଡ ଲହଡି ମାରୁଛି । ମୁହୂର୍ତ୍ତକେ ପୁଣି ଲହଡି ଭାଙ୍ଗି ଖଣ୍ଡଖଣ୍ଡ ହୋଇ ଚୂରିହୋଇ ଯାଉଛି । ବଡ଼ଦାଣ୍ଡରେ ରଥ ବିଜେ । ରଥ ଉପରେ ପ୍ରଭୁ ବିଜେ । ପରିଚିତ ଛନ୍ଦରେ ସଂସାର ପୁଣି ଚାଲିଛି । ପ୍ରଭୁ ଅବତରଣ କରୁଛନ୍ତି ଜଗତ ପ୍ରବାହରେ ଜଡ଼ ଭୂମିକୁ ! ଲୀଳା-ପ୍ରବଣ, କରୁଣା ପ୍ରବଣ ହୋଇଛନ୍ତି ଜଗନ୍ନାଥ !

-"ଅଗାଧ ଜଳରାଶିରେ ବୁଡ଼ିଗଲି, ପ୍ରଭୁ ! ମୋର ଚେତନା ମୁହ୍ୟମାନ । ବୁଦ୍ଧି ବିବେକ ମନ ଜ୍ଞାନ ସବୁ ବିନଷ୍ଟ । ଅକଳନୀୟ ଶୀତଳ ଜଳାର୍ଣ୍ଣବ ରୂପେ ମୃତ୍ୟୁ ମୋତେ ଗ୍ରାସ କରିଯାଉଛି । ମୁଁ ମୋର ବେଦ-ଚୈତନ୍ୟ ହରାଇ ସାରିଛି । ସଂସାର ପାରାବାର ମୋ ପାଇଁ ଥଳକୂଳ ନଥିବା ପ୍ରଳୟ ପୟୋଧି । ମୁଁ ବିମୂଢ଼ । ମୁଁ ପରାସ୍ତ । ତୋର ଶରଣାଗତ ।'

- "ମୁଁ ସେଥିପାଇଁ ତୋର ଭାର ଗ୍ରହଣ କରିବି ! ଜଳରେ ମହାକାୟ ଜଳଚର

ହୋଇ ବିଚରଣ କରିବି ! ଆଲୋଡ଼ନ କରିବି ପ୍ରଳୟ ଜଳରାଶିର ଦିଗ୍‌ବିଦିଗ । ଆକୁଳାୟିତ କରିବି ସମୁଦ୍ର ! ତୋର ଅପହୃତ ଚୈତନ୍ୟ ଉଦ୍ଧାର କରିବି । ବେଦ ଉଦ୍ଧାର କରିବି ।'

– "ମୋତେ ଦୁର୍ବଳ, କ୍ଷୁଦ୍ର ଜୀବ କରି ଗଢ଼ିଲୁ । ମୋ ଉପରେ ଜନ୍ମ ମୃତ୍ୟୁ ଜରା ବ୍ୟାଧିର ବିନ୍ଧ୍ୟାଚଳ ମଡ଼େଇ ହୋଇ ପଡିଛି । ଏ ବିପୁଳା ପୃଥିବୀର ଗୁରୁଭାର ମୋ ଚେତନାର ଲୁତା ଜାଲରେ ସମ୍ଭାଳି ବଞ୍ଚିବାକୁ ମୁଁ ସମର୍ଥ ନୁହେଁ । ମୁଁ ପେଷି ହୋଇଗଲି ପ୍ରଭୁ, ଅକୁଳାନ ଦୁଃଖର ମୃତଭାର ତଳେ ମୋର ସମଗ୍ର ପୃଥିବୀ ଗଳି ପଡୁଛି ଅତଳ ଶୂନ୍ୟକୁ ।'

– "ମୁଁ ମୋର କର୍ମଠ ପୃଷ୍ଠରେ ଏ ସମସ୍ତ ଗୁରୁଭାରା ଧରଣୀ ଧାରଣ କରିବି । ଶୂନ୍ୟକୁ ଆବୋରିବି ମୋର ମହାକାୟା ବିସ୍ତାର କରି । ଦନ୍ତାଗ୍ରେ ତୋଳି ଧରିବି ଏ ଭାସମାନ ପୃଥ୍ୱୀ । ତୋତେ ରଖିବି, ଅବଶ୍ୟ ରଖିବି ।"

'କିପରି ରଖିବୁ ଜଗନ୍ନାଥ । ତୋର ନିର୍ଦ୍ଦେଶରେ ଯେ ମୋତେ ପାଳନ କରିଥାନ୍ତା, ଯେ ମୋର ପୋଷଣକର୍ତ୍ତା, ଯାହାଠାରୁ ରସ ଗ୍ରହଣ କରି ମୁଁ ପରିପୁଷ୍ଟ ହୋଇଥାନ୍ତି, ସେ ଧର୍ମଲଙ୍ଘନ କରୁଛି । ମୁଁ ଜାଣିଥିଲି ତୁ ହିଁ ଏକମାତ୍ର କର୍ତ୍ତା । ଏ ସଂସାର ତୋର ଖେଳ ଘର । ତୋର ଅନୁଗତ ହେବାରେ ଅପ୍ରାଧ ଅର୍ଜିଲି । ଜାଣି ନଥିଲି ତୋର ସଂସାରରେ ତୋତେ ବିରୋଧ କରି ଏତେ ବଡ଼ ଅପଶକ୍ତି ମୋତେ ଘେରି ରହିଛି । ମୁଁ ଦୁର୍ବଳ ଶିଶୁପରି ଅସହାୟ । ସେ ମୋତେ ମାରିଦେଉ, ମୋର ଦୁଃଖ ନାହିଁ । ସେ ତୋତେ ଅସ୍ୱୀକାର କରୁଛି, ଅପ୍ରମାଣିତ କରୁଛି । ତୁ, କେଉଁଠି ଅଛୁ ପ୍ରଭୁ, ପ୍ରକଟ ହୁଅ ମୋର ଦୁଃଖ ନାଶ କର ।'

– "ମୁଁ ଜଳ ସ୍ଥଳ ଆକାଶରେ ପରିପୂର୍ଣ୍ଣ ହୋଇ ରହିଛି । ସବୁ ଘଟରେ ମୁଁ ହିଁ ବିଦ୍ୟମାନ । ମୁଁ ଏକଦା, ଏ ସୃଷ୍ଟିର ମୂର୍ଦ୍ଧା ବିଦୀର୍ଣ୍ଣ କରି ପ୍ରବେଶ କରିଥିଲି । ଜଡ଼ ସ୍ତମ୍ଭକୁ ବିଦାରଣ କରି ମୁଁ ପ୍ରକଟ ହେବି । ମୋର ହୁଙ୍କାରରେ ସେ ମୂର୍ଚ୍ଛିତ ହେବ । ମୁଁ ତାକୁ ବିଦୀର୍ଣ୍ଣ କରି ତା ଭିତରୁ ନିର୍ଗତ ହେବି । ତୁ ଦୁର୍ବଳ ଶିଶୁ ନୁହେଁ, ତୁ ଅସହାୟ ନୁହେଁ । କାହାର ସାହସ ଅଛି ତୋର କେଶାଗ୍ର ସ୍ପର୍ଶ କରିବ ? ତୁ ମୋର ପ୍ରଣତ ଭକ୍ତ । ଆ, ମୋ କୋଳକୁ, ମୁଁ ତୋତେ ଲେହନ କରିବି ! ତୋର ଦୁଃଖ, କ୍ଳେଶ ଅସହାୟତାକୁ ଲେହନ କରି ନିଶ୍ଚିହ୍ନ କରିଦେବି ।'

- "ମୁଁ ଖର୍ବ । ମୁଁ ସଂକୀର୍ଣ୍ଣ ସୀମା ଭିତରେ ଅପ୍ରସାରିତ ଆତ୍ମା । ମୋର ବିସ୍ତାର ନାହିଁ । ମୁଁ କାର୍ପଣ୍ୟ ଦୋଷରେ ମ୍ରିୟମାଣ । ତୋର ଭୂମା-ବିଭୂତି ମୋ ପାଇଁ କେବଳ ଅସହାୟ ବିଶ୍ୱାସ । ଏଭଳି ରୁଦ୍ଧି ରଖିଥିବା ସୀମା ଭିତରୁ କିପରି ଅସୀମର ବିସ୍ତାର ସମ୍ଭବ? ମୋର ଅସ୍ପୃହା ନାହିଁ । ମୋର ଚେତନାରେ ଖର୍ବର ଛାୟା । ମୁଁ ଦ୍ୱନ୍ଦ୍ୱ, ସଂଶୟ, ଅବିଶ୍ୱାସରେ ସାଙ୍କୁଡି ଯାଉଛି ପ୍ରଭୁ, ମୋତେ ଉନ୍ମୁକ୍ତ କର । ରକ୍ଷାକର ଏ ବାମନତ୍ୱରୁ ।'

- 'କିଏ ବାମନ ? ଅଣୁରୁ ଅଣୀୟାନ୍ ମହତ୍‌ରୁ ମହୀୟାନ ଏକ ଏବଂ ଅଭିନ୍ନ ସତ୍ତା, ମୁଁ ତୋତେ ତୋର ଖର୍ବ-ଅବିଦ୍ୟାରୁ ମୁକ୍ତ କରିବି । ଖର୍ବରୂପ ଭିତରୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳକୁ ଆଚ୍ଛନ୍ନ କରି ବିକ୍ରମି ଯିବି । ଭୂତ, ଭବିଷ୍ୟତ, ବର୍ତମାନକୁ ସ୍ତମ୍ଭିତ କରି ସମଗ୍ର ବିଶ୍ୱକୁ ଲୋମକୂପରେ ଧାରଣ କରିବି ! ତୁ ଭୂମା, ତୁ ତ୍ରିବିକ୍ରମ, ତୁହିଁ ଅଖଣ୍ଡୈକ ଚିନ୍ମୟସତ୍ତା । ତୁ ତାପିତ ହେଲେ ମୁଁ ଅସ୍ଥିର ହୁଏ । ମୁଁ କୁପିତ ହୁଏ । କୁଠାର ନେଇ ମୁଁ ଅପଶକ୍ତିକୁ ସଂହାର କରିବି । ତାର ରକ୍ତରେ କ୍ଷାଳନ କରିବି ତୋର ପୃଥ୍ୱୀ ।'

- "ମୁଁ ବାରମ୍ବାର ବିଡମ୍ବିତ ହେଲି ପ୍ରଭୁ ! ଭାଗ୍ୟର କ୍ରୂର ପରିହାସ ଦୁଃସହ ! ମୋର ନ୍ୟାଯ୍ୟ ଅଧିକାର ମୋର ଅଭୁକ୍ତ ଆହାରରୁ ମୁଁ ସଦା ବଞ୍ଚିତ ହେଲି । ଜୀବନ ଯାତନା ତୁ କଣ ବୁଝିବୁ ପ୍ରଭୁ, ତୋର ଐଶ୍ୱର୍ଯ୍ୟମୟ ବୈକୁଣ୍ଠରେ ଏ ଜୀବନର ଦୁଃଖ କାହିଁ ? ଏ ଦୁଃଖ, ଏ ଯନ୍ତ୍ରଣା ଏଭଳି ବିଡମ୍ବନା କାହିଁ ? ଏଭଳି ନିଃସଙ୍ଗ ବ୍ୟର୍ଥତା କାହିଁ ?'

- "କିବା ସୁଖ, କିବା ଅଧିକାରରୁ ତୁ ବଞ୍ଚିତ ହେଲୁ ? ରାଜମୁକୁଟ ପରିବର୍ତ୍ତେ ବନବାସୀର ଜଟାଭାର ତୁ କ'ଣ ବହନ କରିଛୁ ? ମୁଁ ତୋର ତୀବ୍ରତମ ଯାତନା ସ୍ୱୟଂ ଗ୍ରହଣ କରିବି । ଅନାହାର କଷ୍ଟ ଭିତରେ ପତ୍ନୀ ଅପହରଣ ଲାଞ୍ଛନା ସହି ସତ୍ୟନିଷ୍ଠ ରହିବି ! ମାନବ ଜୀବନର ସୀମା ଭିତରେ ତାର ଦୁର୍ଦ୍ଧର୍ଷ ଶତ୍ରୁ ତାପନର ଶକ୍ତି ପ୍ରମାଣିତ କରିବି । ଯାତନା ସହି ଯାତନାକୁ ଅତିକ୍ରମ କରିବି ! ତୋ ପାଇଁ ମୁଁ ନ୍ୟୁନତମ ଭୂମିରେ ଜନ୍ମନେବି ! କାରାଗାରରେ ଶୃଙ୍ଖଳବଦ୍ଧ ମୋର ଜନକ ଜନନୀ । ମୋ ମାତୁଳ ମୋର ଶତ୍ରୁ । ଏଭଳି ସଙ୍କଟରୁ ମାନବ ଶରୀରରେ ପୁରୁଷୋତ୍ତମ ରୂପେ ଉଦୟ ହେବି । ଏକାକୀ ଭ୍ରମିବି ପୃଥିବୀ ! ତୋ ପାଇଁ ଧର୍ମ ସ୍ଥାପନ କରିବି ।

କୌଣସି ନିର୍ଜନ ଅରଣ୍ୟରେ ଅବହେଳାରେ ବିଷଦଗ୍ଧ ଶରଫଳାରେ ମୋ ଶରୀର ବିଦ୍ଧ ହେବ । ଯନ୍ତଣା, ଦେହାବସାନ ନିଃସଙ୍ଗତାର ସୀମା ସୂଚିତ କରି ତାକୁ ଅତିକ୍ରମ କରିଯିବି ।"

"ତୋ ପାଇଁ ମୋର ଅଦେୟ କିଛି ନାହିଁ । ମୁଁ ତୋ ପାଇଁ ଅହରହ ବଂଶୀବାଦନ କରେ । ତୁ ନଥିଲେ ମୋର ପ୍ରେମ ମିଥ୍ୟା ! ତୁ ମୋତେ ଦେଖି ନ ପାରିବା ଏକ ବିଡମ୍ବନା । ପଲକ ମାତ୍ର ଫିଟାଇବାର ଅଧିକାର ତୋର । ମୁଁ ଆକାଶରେ ମେଘ ରୂପରେ, ବନସ୍ପତିର ସୌରଭ ରୂପରେ, ପର୍ବତ ମାଳାର ଶୀର୍ଷ ରୂପରେ ସର୍ବତ୍ର ତୋର ଅପେକ୍ଷାରେ ରହିଛି । ପରିଶେଷରେ ତୋ ସମ୍ମୁଖରେ ଏଇ ଉଭା ହେଇଛି । ତୁ ଯେପରି ଇଚ୍ଛା ଗ୍ରହଣ କର, ଯେପରି ଇଚ୍ଛା ମୋତେ ଟାଣିନେ ।"

ହେ ଡାହୁକ, ନିର୍ଦ୍ଦେଶ ଦିଅ । ହେ ନନ୍ଦିଘୋଷ, ବିଜୟ କର ! ହେ ଦାରୁକ, ହେ ଅଶ୍ୱମାନେ, ହେ ବସୁଧା-ଯେ ଯାହା ସ୍ଥାନ ଆବୋରି ରହ ! ଅବତୀର୍ଣ୍ଣ ହୁଅନ୍ତୁ ଠାକୁରେ, ଜଗତ୍‌ପ୍ରବାହରେ ରୂପାୟିତ ହୁଅନ୍ତୁ ଜଗଦୀଶ ।

□□□

ଅନାଦିମଧ୍ୟାନ୍ତ ମଚିନ୍ତ୍ୟରୂପମ୍
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଗୂଢ଼ାୟ କୂଟସଙ୍କେତ ବିଗ୍ରହାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ବ୍ରହ୍ମୋଦରଂ ବିବିକ୍ତ ବ୍ୟୋମ ବର୍ଣ୍ଣମ୍
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ବେଦାନ୍ତବେଦ୍ୟାୟ ବେଦୋତ୍ତରାୟ
ନମୋନମସ୍ତେ ପୁରୁଷୋତ୍ତମାୟ ।
ସତ୍ୟାୟ ଧର୍ମାୟ ସଦସତ୍‌ପରାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଏକାୟ ସକଳ ଦେବସମନ୍ୱିତାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଶାନ୍ତାୟ ଶୁଭମଙ୍ଗଳକାରକାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ନୀଳାଦ୍ରିନାଥାୟ ଜଗଦ୍ଧିତାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
॥ ନମୋ ନମସ୍ତେ ପୁରୁଷୋତ୍ତମାୟ ॥

# ⊙

ଜାଣିଥିଲି ଏ ବିମାନ ଅବଶ୍ୟ ଦିନେ ଦକ୍ଷିଣମୋଡ ନେବ । ଜାଣିଥିଲି ଚକ ବୁଲିଲାବେଳେ ଗହୀର ଶରଫଳା ଚିହ୍ନରେ ଏ ଭୂଇଁ ଅବଶ୍ୟ ବିଦୀର୍ଣ୍ଣ ହେବ ଏବଂ ଖେଳ ଭାଙ୍ଗିଦେଇ ସେ ବାହୁଡ଼ି ଯିବ । ଏ ପଙ୍କରେ ସେ ପଦ୍ମ ଫୁଟିଥିଲା ବୋଲି ଖାଲି ଗୋଟାଏ ପ୍ରସିଦ୍ଧି ରହିଯିବ ସିନା; ସେ କିନ୍ତୁ ଅପସରି ଯିବ ତା' ସୂର୍ଯ୍ୟମଣ୍ଡଳକୁ । ସେ ଏଠୁ ମୁହଁଫେରେଇ ନେଲା ଉତ୍ତାରୁ କେଉଁ ଶ୍ରଦ୍ଧାରେ ଅବା ମୁଁ ଚାହିଁବି ସେ ଦକ୍ଷିଣମୁହାଁ ରଥଟାକୁ । ସବୁ ଶ୍ରଦ୍ଧା ତ' ସେ ଭାଙ୍ଗି ସାରିଛି । ସେ ଯେମିତି ଶ୍ରଦ୍ଧା ଲଗାଇ ଜାଣେ ସେମିତି ଭାଙ୍ଗି ମଧ ଜାଣେ । ତାକୁ କ'ଣ ଚିହ୍ନିନାହିଁ ?

ହୁରି ପଡିଲା ଯେ ଆକାଶରେ ନୂଆମେଘ ଟେକିଲାଣି । କେତେ ଆଡମ୍ବର ହେଲାଣି । ବିଜେ ମାର୍ଗ ଝଟକିଲାଣି । ସେ ଏଥର ଓହ୍ଲେଇ ଆସିବ । ବାଲିବନ୍ଧ ଏପାଖେ ଥାଇ ମୁଁ ଗଭୀର ଉଦ୍‌ବେଗରେ ଓହଟି ଚାହିଁଲି ଦକ୍ଷିଣକୁ । ମୋ ଅଣାୟତ୍ତରେ ମୋ ଶରୀର କମ୍ପିଲା । ଥରକୁଥର ମୋ ଭିତର ଉଚ୍ଛୁଳିଲା । ଭାବିଲି ସେ ଆସିଲେ ଲକ୍ଷେ ପଦ୍ମ ବିଛେଇ ଦେବି । କସ୍ତୁରୀ ଚନ୍ଦନ ବର୍ଷା କରି ଦେବି । ମଲ୍ଲୀ, ମାଳତୀ, ଚଂପା, ଗଜଦନ୍ତର ସହସ୍ରେ ହାର ଗୁନ୍ଥି ମଣ୍ଡିଦେବି ତା' ପାଦଠାରୁ ମସ୍ତକଯାଏଁ । ବନମାଳାରେ ମଣ୍ଡିହୋଇ, ଗଜମୁକ୍ତାର ହାର-କଙ୍କଣ ପିନ୍ଧି ସହସ୍ରେ କିରାତିନୀ ଶଂଖଫୁଙ୍କିବେ । ଚୁଆ କର୍ପୂର ବର୍ଷାହେବ । ମୁଁ ନିଜେ ପାଖୁଡ଼ା ପାଖୁଡ଼ା ହୋଇ ଫିଟିଯିବି, ବୁଣି ହୋଇଯିବି ନିଉଛାଳି ହେଲାବେଳେ ।

କିଛି ହେଲାନାହିଁ । ମଧୁସମୁଦ୍ର ମାଡିଆସିଲା ଅସତର୍କ ଦକ୍ଷିଣରୁ । ଭସେଇ ନେଇଗଲା ମୋତେ । ମାଡିଗଲା ମୋ ରାଜ୍ୟସାରା । ତାକୁ ଥରେ କୋଳାଗ୍ରତ ସୁଦ୍ଧା କରିପାରିଲି ନାହିଁ । ତା' ମୁହଁକୁ ଥରେ ନିରେଖି ପାରିଲି ନାହିଁ । ମୋର ତ୍ରିପୁର ଗହଗହ ହେଲା । ମୋର ସକଳ ଜ୍ଞାନ ଲୋପ ପାଇଗଲା । ମୁଁ ଜାଣିପାରିଲି ନାହିଁ

କେଉଁ ଅପୂର୍ବ ପୃଥିବୀରେ ମୁଁ ସେତେବେଳେ ଲୋଟୁଥିଲି; କଣ ସବୁ ଘଟିଯାଉଥିଲା ମୋ ଭିତରେ ଏବଂ ବାହାରେ । ମୁଁ କେବଳ ଅଖଣ୍ଡ ରୋମାଞ୍ଚରେ ପୁଲକିତ ହେଉଥାଏ । ସେ ଘୋଟି ରହିଥାଏ ସ୍ୱର୍ଣ୍ଣାଭମେଘ ପରି ମୋ ଆକାଶସାରା । ଘଡି ଘଡିକେ ରୂପ ବଦଳାଇ, ରଙ୍ଗ ବଦଳାଇ ମୋତେ ଆଚମ୍ୱିତ, ମୁଗ୍ଧ, ବିମୂଢ଼ କରୁଥାଏ । ସେତେବେଳେ ଚାରିଯୁଗଯାକ ମୁହୂର୍ତ୍ତକ ଭିତରେ ପାରି ହୋଇ ଯାଇଥିଲେ ମୁଁ ଜାଣିପାରି ନଥାନ୍ତି । ଏବେ ମଧ୍ୟ ପ୍ରତିଟି ମୁହୂର୍ତ୍ତରେ ଚାରିଯୁଗ ଓହଳିରହି ତାକୁ ପାରି ହେବାକୁ ଦେଉନାହାନ୍ତି । ଅପସରି ଯାଉଛି ମୋର ସର୍ବସ୍ୱ । ଏ ମାଟି ଘଟକୁ ଛାଡି ବାହାରି ଯାଉଛି ପ୍ରାଣପୁରୁଷ । ଅଥଚ ମୋର କୌଣସି ଉପାୟ ନାହିଁ । ଯା ଭିତରକୁ ସେ ନିଜ ଇଚ୍ଛାରେ, ସ୍ୱକୀୟ ବଡ଼ପଣରେ, ଖେଳୁଆଡ ବୁଦ୍ଧିରେ ଓହ୍ଲେଇ ଆସିଥିଲା, କିଛି ନାଚିବାକୁ, କିଛି ନଚେଇବାକୁ । ଖେଳରୁ ମନ ଭାଙ୍ଗିଗଲା । ସେ ସେମିତି ଅବଲୀଳାରେ ଫେରିଯିବ । କାହାରି କଥା ଶୁଣିବ ନାହିଁ; କାହା ମୁହଁକୁ ଚାହିଁବ ନାହିଁ ।

ଉତ୍ସବ ବାଜଣା ଅତି ଉଚ୍ଚାଟରେ ବାଜିଲାଣି । ମୋତେ ସହସ୍ର ସାରଙ୍ଗୀ ଏକାଠି ରୋଳ କଲାପରି ଶୁଭୁଛି । ଏ ସପ୍ତଦ୍ୱୀପା ମେଦିନୀ, ଏ ନଦୀ, ପର୍ବତ, ଅରଣ୍ୟ, ଏ ନବର-ପାଚେରୀ ଏ ବକୁଳ ବନ-ସମସ୍ତେ ମିଶି ବିଳାପ କଲେ ଭଲା ସେ ଆଉ ଘଡିଏ ଏଠି ରହିଯିବ ? -ଆଉ କିଏ ଭଲା ଚାହୁଁଛି ତାକୁ ଏଠି ରଖିବା ପାଇଁ ? ଏ ପିଣ୍ଡ ଖାଲି ବାହୁନି ହେଉଛି । ଜାବୁଡ଼ି ଧରୁଛି ଅସରନ୍ତି ସ୍ନେହ ସୋହାଗର ଅପସୃତ ଅତୀତକୁ । ସେ କିନ୍ତୁ, ଡେଣାଟେକି କମ୍ପିଲାଣି । ନିରାଶ କଲାଣି ତା' ସ୍ଥିର ଚାହାଣିରେ, ଭଙ୍ଗୀରେ, ତା' ସେନାପଟାଭିଡ଼ା ଉଦ୍ୟତ ଠାଣିରେ । ଏ ମୂକ ପଥର କାନ୍ଥ ଭିତରେ ଏବେ ବି କେତେ ଶଙ୍ଖଧ୍ୱନି, କେତେ ସ୍ତବ, ସ୍ତୋତ୍ର, କେତେ ଭାଷା, କେତେ ସ୍ୱରର ନିବେଦନ, କେତେ କାନ୍ଦ ହସ, ଡାକହାକ ଗୁଞ୍ଜରୁଛି । କେତେ ଧୂପଧୂଆଁର ସୁଗନ୍ଧ, କର୍ପୂର ଆଳତିର ମହକ ବୋଳି ହୋଇ ରହିଛି । ଏ ବିମୂଢ଼ ସିଂହାସନରେ ଏବେ ମଧ୍ୟ କେତେ କଙ୍କଣର ଦାଗ, କେତେ କପାଳର ସିନ୍ଦୂର, କେତେ ବୁକୁବାହୁର ହଳଦୀ ଲାଗି ରହିଛି । ସେ ପ୍ରଳମ୍ବ ବାହୁରୁ ଲମ୍ବିଥିବା ଦୟଣାମାଳ ଓଟାରିଲାବେଳେ ଶ୍ରୀଭୁଜ ଉପରେ ଚାପ ଅନୁଭବ ହୋଇଛି । ଗ୍ରାମ୍ୟ କିଶୋରୀଟି ଲୋଟିପଡିଲା ବେଳେ ଶ୍ରୀମୁଖ ରାହୁ ରେଖା ଉପରେ ମଞ୍ଜୁଆଡି ବୋଳି ହୋଇଯାଇଛି । ବୁଢ଼ା ଆଙ୍ଗୁଠିରୁ ଅମୃତ ପିଉଥିବା ଶିଶୁକୁ ଶ୍ରୀଅଙ୍ଗଛୁଆଁ କଲାବେଳେ ଅଲକ୍ଷ୍ୟରେ ତା' ପାଟିରୁ ଲାଳ

ଥୋପି ପଡିଛି ରଙ୍ଗାଅଧର ଉପରେ। ଏଠି ଆଳତି ଉଠିଛି । ମଣୋହି ବଢ଼ିଛି । ପହୁଡ ସରିଛି । ଏ ଭିତରେ ଚନ୍ଦ୍ର ସୂର୍ଯ୍ୟ ଉନ୍ନିଦ୍ର ସେବାରେ ଲାଗିଛନ୍ତି । ଦିନ ରାତି ଜଣା ପଡିନାହିଁ । ମଧୁସମୁଦ୍ରରୁ ଆନନ୍ଦ ଲହଡି ମାରୁଛି ଅଫୁରନ୍ତ । ଏବେ ସବୁ ପଛରେ ପଡି ରହିଯିବ, ଏ ଶୂନ୍ୟ ସିଂହାସନ, ଏ ନୀରବ ପଥର କାନ୍ଥ, ଏ ନିଛାଟିଆ ଅଗଣା, ନବର, ବେଢ଼ା ଆଉ ପାଚେରୀ !- ସବୁ ସୋହାଗ ପଛେଇ ଯିବ ମଉଳା ପାଖୁଡ଼ା ପରି । ଏ ପଥର ଫାଟି ନଯାଇ ଧୈର୍ଯ୍ୟ ଧରିବ ତ !

କିଏ ଅଛ ହେ, ସେବକ ସୂପକାର, ଏତେବେଳେ ଆଉ ହେଳା କରନାହିଁ । ଲୁଟିଆଣ ମୋ ସମଗ୍ର ଉପବନରୁ ସବୁ ଫୁଲ, କଢ଼, ପତ୍ର । ମୋର ଆଉ କ'ଣ ହେବ ? ଫଳିବାର ନାହିଁ ମୋର ଆଶ । ମଣ୍ଡିଦିଅ ମୋ କାଳିଆ-କାଞ୍ଚନକୁ । ମାଳ, ଚୂଳ, ମେଖଳା, ଚାହିଆରେ ଫୁଲ ମହକିବ ଯେମିତି । ଫୁଲଗର୍ଭରୁ ମହୁ ଝରୁଥିବ ଯେମିତି ! ଫୁଲରେ ଏହାଙ୍କ ଶରଧା, ଫୁଲେ ଦିଶନ୍ତି ତୋରା । ଚନ୍ଦନପାଟୀ କଳାବେଳେ କସ୍ତୁରୀ ଗୋରଚନା ଟୋପା ଦେବାକୁ ପାଶୋରିବ ନାହିଁ । ଜଟବେଢାକୁ ଘେରି ଜୁଇ, ଯାଇ, ମଲ୍ଲୀ, ଟଗର, ଗଜଦନ୍ତ ମଣ୍ଡିଦିଅ । ସରୁ ସରୁ ତୁଳସୀ, କେରି କେରି ଦୟଣା ସାଙ୍ଗକୁ ନାଗେଶ୍ୱର, କନିଅର, ଚମ୍ପାର ଧଣ୍ଡା ଲମ୍ବାଇ ଦିଅ । କୁମ୍ଭପକା ବାସନ୍ତୀପାଟ, ନାଲିଜରି ଥୋପ, ରଙ୍ଗଦୋସଡ଼ା ବିଚିତ୍ର କାଛେଣିରେ ପିନ୍ଧାଇ ଦିଅ । ଜୁରିଦିଅ ମୋର ସବୁ ଭଣ୍ଡାର । ବାଘନଖିକୁ ଟେକି ବାନ୍ଧିବ, ତୋଳା ଛୁଇଁବନାହିଁ । ଧଣ୍ଡା ମଣ୍ଡିଥିବ, ବାହୁ ଲୁଚିବନାହିଁ । ଚୂଳ ଖଞ୍ଜିଥିବ, ଚିତା ବୁଡ଼ିବ ନାହିଁ । ମୋର ଯେତେ ପୁରପଲ୍ଲୀର ବନ୍ଧୁ ପରିଜନଙ୍କୁ ହକାରି ଆଣ, ସେବକେ ! ମୋତେ ଏ ପଥରକାନ୍ଥ ଦେହରୁ ଘୁଞ୍ଚିବାକୁ କହନାହିଁ । ମୋତେ ଆଖି ଫିଟେଇ ଚାହିଁବାକୁ କହନାହିଁ । ତୁମେ ସବୁ ସମ୍ଭାଳି ନିଅ । ଏ ସାରା ରାଜ୍ୟ ଲୁଟି ଆଣି ତା'ବିଜେମାର୍ଗରେ ବୁଣି ଦିଅ । ମନ ହେଲେ ଜାଳିଦିଅ ଏ ଅକିଞ୍ଚନ ପତ୍ର ପୁଷ୍ପଫଳର ମୋ ଅବୋଧ ସଂସାରକୁ । ମୋର କ'ଣ ହେବ ଆଉ । ମୋର ତ' ସରି ଯାଉଛିରେ, ଏହିଠାରୁ ମନୋରଥ ।

ମନାକରିଦିଅ ସେମାନଙ୍କୁ ଲେଉଟ ଚକୁଳି ମଣୋହିକୁ ଆଣନ୍ତୁ ନାହିଁ । ମୁଁ ଜାଣେ ସେ ଗଲେ ଆଉ ଫେରିବ ନାହିଁ । ସେ ଯାଉଚି ନୀଳାଚଳ ଉପରେ ତା' ସୂର୍ଯ୍ୟମଣ୍ଡଳକୁ। ସେ ଅପହଁଚ ଆକାଶକୁ ଏ ହୁଡାହୁଡା ମେଘ ଯାଇ ପାରିବେ ନାହିଁ ।

ମାଟି ପାଣି ପବନ ଏଇ ନିର୍ବେଦ ପଥର କାନ୍ଥର ଖୋଳକୁ ଆଶ୍ରାକରି ରହିଯିବେ । ସେ କାହିଁକି ବାଲିବନ୍ଧ ଏପାରି ଏ ଭୂଇଁକୁ ଓହ୍ଲାଇବ; କାହିଁକି ଲେଉଟିବ ବୋଲି ଆଶା କରୁଛ ? ସେ ଜାଣେ ସେ ଯାଉଛି ବୋଲି । ତା ଢଳଢଳ ଡୋଳା ମୋତେ ଦିଶିଗଲା ଦିନୁ ମୁଁ ଜାଣେ ତା' ମନ କଥା । ତା' ମୁହଁ ଶୁଖି ଗଲେ ମୋ ଆକାଶ ସାଙ୍କୁଡିଯାଏ । ମୁଁ ସେଣିକି ଚାହିଁ ପାରିବି ନାହିଁ। ଯେତେସବୁ ଖୋଳ କରତାଳ ପିଟି ବାହାରେ ନାଚୁଛନ୍ତି, ସେମାନେ ସମସ୍ତେ ପ୍ରବାସୀ ପକ୍ଷୀ । ସେ ରଥର ପିଠିକୁ ମୁଁ ଚାହିଁ ପାରିବି ନାହିଁ । ସେ ଅସରନ୍ତି ବଡ଼ଦାଣ୍ଡର ଶେଷସୀମା ମୋତେ ଦିଶିବ ନାହିଁ । ମୋ ଆଖି ଉପରେ ଆଷାଢ଼ର ସବୁଯାକ ମେଘ ଲହଡି ଭାଙ୍ଗୁଛନ୍ତି । ପବନ ବୋହୁଛି ଅଣଅଶ । ଶୂନ୍ୟ ସମୁଦ୍ର ଶୋଷି ନେଉଛି ମୋ ପଞ୍ଚପ୍ରାଣ ।

କେତେବାଟ ଯିବ ସେ ମୁଁ ଜାଣି ନାହିଁ । ହାଲିଆ ହୋଇଯିବ ପରା ! ଖଞ୍ଜା ସୁଆର କିଏ ଅଛ, ଏତେବେଳେ ଖେଚେଡି ଅନ୍ନ ଗଣ୍ଡେ ଲାଗି କର । ଭୋକ ଆତୁରିଆ ଘଡିଏ ବିଳମ୍ବ ହେଲେ ସମ୍ଭାଳି ପାରେ ନାହିଁ । ଗୁଆଘିଅରେ ସୁସଞ୍ଚରେ ସଂପାଦି ଅଦାଛେଚା ଦେଲେ ତାକୁ ଭଲଲାଗେ । ହେଙ୍ଗୁପକା ଖେଚେଡି ତାର ଅତି ପ୍ରିୟ । ତା ମନ ଉତଲା ଥିବାରୁ ସେ ମୁଣ୍ଡଲାଡି ନାହିଁ କରୁଛି- ତାକୁ ବଳେଇ କରି ଦି'ଗୁଣ୍ଡା ଭୁଞ୍ଜେଇ ଦିଅ । ଟିକିଏ ଆଡ ହୋଇଯାଅ, ସେ ଲାଜକୁରା ପାଖରୁ । ଆଢୁଆଳ କରିଦିଅ !... ମଣୋହିରେ ହାତମାରି ସେ କେବେ ଏମିତି ଉଠେ ନାହିଁ । ମୁଁ ଜାଣେ ସେ ଆଜି ଭୁଞ୍ଜିପାରିବ ନାହିଁ । ଯେଉଁ ସମୁଦ୍ର ଏପାରି ମୋ ବୁକୁରେ ଏତେ ଜୁଆରିଆ ଟେକିଛି, ଆର ପାରିରେ କ'ଣ ତା କୂଳରେ ସେ କଚାଡି ହେଉ ନଥିବ ! ମୁହଁ ଫଣ ଫଣ କରି ତଳକୁ ଚାହିଁ ସେ ବସିଛି । ଯିବନାହିଁ ବୋଲି ଆଡରୁଷା କି ସୁନ୍ଦର ମାନୁଛି କଳାମାଣିକକୁ ! ସେ ଛଳ କରୁଛି ସିନା; ସେ କିନ୍ତୁ ଅବଶ୍ୟ ଯିବ । ନ ହେଲେ ଯେତେସବୁ ଗ୍ରହ ନକ୍ଷତ୍ର ଖଞ୍ଜା ହୋଇ ଅପେକ୍ଷା କରିଛନ୍ତି ସମସ୍ତେ ଖସିପଡିବେ । ମୁଁ କି ସମ୍ଭାଳି ପାରିବି ତାର ଲେଉଟ ଉଜାଣି ? କାହିଁକି ଅସମ୍ଭବର ଲୋଭ ଦେଖେଇ ମୋତେ ଏ ଥମଥମ ବେଳାରେ ଏମିତି ଉଚ୍ଚାଟିତ କରୁଛ ? ଯିବ ଯେବେ ଯାଅ ନାଥ, ଯାଅ ନୀଳାଚଳ !

ଆଣ ହେ ସେବକେ- ଆଲଟ ଚାମର, ପାଟ ଚିମ୍ପୁଳି, ପାଟ ପାହାଡ଼ ବେଣାଚେର ବିଞ୍ଚେଣି ଧରି ପାଖେ ପାଖେ ଲାଗିଥାଅ । ଝୁଲିଲାବେଳେ ଝାଳ ଟୋପି ଟୋପି ଉକୁଟି

ଆସିଲେ, ଆଲଟ ସେବା କରି ସୁସ୍ଥ କରିବ । ପାଟକନାରେ ଉଶ୍ୱାସରେ ପୋଛିବ ସେ ଲହୁଣୀଖିଆ ମୁହଁକୁ । ବାହୁତଳୁ ଉହୁଙ୍କା ମାରିବ ନାହିଁ; ପୀଡା ହେବ । ଅଣ୍ଟାରେ ସେମିତି ଆଣ୍ଟକରି ପାଟଦଉଡି ବାନ୍ଧିବ ନାହିଁ; ସେ ସମ୍ଭାଳି ପାରିବ ନାହିଁ । କଷ୍ଟହେଲେ ସେ ଖାଲି ଅନାଏ; କିଛି କହେ ନାହିଁ । ତାକୁ ଚାହିଁ ଜାଣିଲେ ତୁମେ ବଳେ ବୁଝିଯିବ । ପଲକ ପଡୁ ନଥିବା ସେ ଆଖି ଯୋଡିକରେ ସେ କେତେବେଳେ କେତେ ଭଙ୍ଗୀରେ ଚାହେଁ । ବାମନ ବେଶରେ ତାଳପତ୍ର ଛତା ତଳୁ ତାର ସେ ଯାଚକ ଚାହାଣୀ ଦେଖି ଦେଲେ ଚଉଦ ବ୍ରହ୍ମାଣ୍ଡକୁ ଶଙ୍ଖରେ ପାଣିଟେକି ତା ପ୍ରସାରିତ ହାତରେ ଟୋକିଦେବାକୁ ଇଚ୍ଛା ହେବ; ଖରଶାଣ ପରଶୁ ଝମକାଇ ରୁଧିର ତର୍ପଣ କଲାବେଳେ, ସେଇ ଆଖିରୁ ଖସୁଥିବା ନିଆଁଝୁଲ ପାଖରୁ ଆଡ ହୋଇଯିବାକୁ ତର ସହିବ ନାହିଁ ।

ତୁମେ ସବୁବେଳେ ତାକୁ ଅଚଳ ସ୍ଥାଣୁ ଅଜ୍ଞେୟ ବ୍ରହ୍ମପୁରୁଷ ବୋଲି କହିବାର ମୋ କାନରେ ପଡିଛି । ତୁମେ ହୁଏତ ସେ ଭଳି ସ୍ତବ କରୁଥାଅ । ମୋତେ ଶୁଭେ ଗାଳି ଦେଲାଭଳି ! ସେ କାହିଁକି ଅଚଳ, ସ୍ଥାଣୁ ହୁଅନ୍ତା ! ଝଙ୍କା ପବନରେ ତାଳତରୁ ଆସ୍ତେ ଦୋହଲିଲା ପରି, ମନ ପାଇଥିଲେ ସେ ସିଂହାସନରେ ଝୁଲିବା ମୁଁ ଦେଖିଛି । ନୂଆ ବର୍ଷା ପଡିଲା ବେଳେ କପୋତ ଡେଣା ଟେକି କାକର ପବନ ପିଇଲା ପରି, ମହକୁ ଥିବା ମନ ଲାଖି ଧଣ୍ଡା ଲାଗି ହୋଇଗଲେ, ସେ ବାହୁ ଉଲୁସେଇବାର ମୁଁ ଦେଖିଛି । ମଧୁର ଗୀତ ଶୁଣିଲାବେଳେ ସେ ବଙ୍କେଇ ଚାହିଁ ହସିଲା ପରି ଦିଶେ । କେତେଥର ମୋତେ ସେ ଆଶ୍ଳେଷିଛି ! ମୋ କାନ୍ଧରେ ହାତରଖି କହିଛି, "ଆ, ତୋ ବଣରୁ ପାଚିଲା କୋଳି ତୋଳିବା !" ଡାକିଛି, "ମୋତେ କୁଣ୍ଢାଇ ଧରିଥା, ମୁଁ ତୋତେ ଏ ଭରା ନଈ ପାରିକରି ନେଇଯିବି ।" ନଈଦେଖି ମୁଁ ଚମକିଛି । ସେ ମୋ ମୁହଁକୁ ଚାହିଁ ହସିଛି । ବାପ, ମା, ଭାଇ, ପୁଅ, ଝିଅ, ମାଇପ ହୋଇ ସେ ବ୍ୟାପି ଯାଇଛି ମୋ ଆଦିଗନ୍ତ, ଭିତରେ ବାହାରେ, ସ୍ୱପ୍ନରେ ଜାଗରଣରେ ସେଇ କେବଳ ଲହଡି ମାରିଛି । ସେ ନ ଦେଇଛି ବୋଲି କେମିତି କହିବି ? ସେ ଭୁଞ୍ଜି ଭୁଞ୍ଜେଇଛି ! ଏତେ ଆପଣାର ବୋଲି ପ୍ରତେ ହେଲା ଉତାରୁ ସେ ପର କରି ଦେଲା । ଘୁଞ୍ଚିଗଲା ମୋ ବେଢ଼ାଭିତରୁ । କାହିଁକି ଗଲା ? ମୋ ବଣରୁ ତ' କୋଳି ସରି ନାହିଁ !

ଟଳମଳ ଭରା ନଈର ଏପାରି ତ' ମୁଁ ଏବେ ମଧ୍ୟ ଚଉତା ପୋଥିଟିଏ ପରି ଠିଆ ହୋଇଛି । ବର୍ଷା ସିନା ଆସେ ଯିବା ପାଇଁ, ଜହ୍ନ ଉଏଁ ଅସ୍ତହେବାପାଇଁ । ସେ ବି କ'ଣ ସେଇଆ ? ଆସେ; ଓଦା କରିଦିଏ; ଝଲମଲ କରିଦିଏ; ଚହଲାଇଦିଏ ଦୋହଲାଇଦିଏ, ତା'ପରେ ଚାଲିଯାଏ ? କେଉଁଠୁ ଆସେ... ? କୁଆଡ଼େ ଯାଏ ? କେମିତି ଯାଏ ସେ ସର୍ବବ୍ୟାପୀ ପୁରୁଷ ?

ସେ ଯାଏ ! ହେଇତ, ଯାଉଛି ! ହେଇ ବଡ଼ ଠାକୁରଙ୍କ ପହଣ୍ଡି ଶବ୍ଦରେ ଭୂଇଁ ଦୁଲୁକୁଛି । ସେ କାହାକୁ ଶୁଣୁନାହାନ୍ତି । କିଛି ଦେଖୁ ନାହାନ୍ତି । ଆନମନା ସାଆନ୍ତେ ମନ ଉଣା କରିଛନ୍ତି କି ? ଯିବା ନିଧାର୍ଯ୍ୟ ଜାଣି ସୁଦ୍ଧା ଗଲାବେଳେ ଫେରି ଚାହିଁ ଦେବାକୁ ମନ କରୁଛନ୍ତି ? ତମକୁ ମୋ ରାଣ, ଠାକୁରେ, ଫେରି ଚାହଁନାହିଁ ବିବର୍ଣ୍ଣ ମାଟି ପିଣ୍ଡ ପରି ଏ ନିର୍ଜନ ଉଆସକୁ । ଚାହଁ ନାହିଁ ମୋତେ । ସ୍ଥିର ଚୈତନ୍ୟ-ପୁରୁଷ ସେମିତି ସ୍ଥିର ରହିଥାଅ । କେହି ଅସ୍ଥିର ହୁଅନାହିଁ । କେହି ଲେଉଟି ଚାହଁ ନାହିଁ ମୋତେ । ସେବାରେ ହେଳା ହୋଇଯିବ । ହେ,ଧୂଳି-ଧୂସର କିରାତ, କିରାତିନୀମାନେ; କେହି ସେପରି ବିଳାପ କରନାହିଁ । ଯାତ୍ରା ସଂଗୀତରେ ତାଳ ଭଙ୍ଗହେବ ! ତାଙ୍କ ରଥରେ ତାଙ୍କୁ ବସିବାକୁ ଦିଅ । ତାଙ୍କ ଘଣ୍ଟୁଆ, କାହାଳିଆ, ଶଂଖୁଆ, ଅସଂଖ୍ୟ ସେବକ ଭକ୍ତ ଆସିଛନ୍ତି ତାଙ୍କୁ ପାଛୋଟି ନେବାପାଇଁ । ଆଡ ହୋଇ ଯାଅ । ସେମାନେ ଛତିଶା ନିଯୋଗରେ ତାଙ୍କ ପାହାଡ଼ଚୂଳିଆ ସମ୍ଭ୍ରାନ୍ତ ଠାକୁରଙ୍କୁ ନେଇଯିବେ । ଆମେ ମାଟି ବାଲିର ନିମ୍ନ ଭୂମିରେ କୋଳିଗଛ ପରି ଅପେକ୍ଷା କରି ରହିଯିବା ।

ମୁଁ ଜାଣି ପାରୁଛି ଏଥର ସିଂହାସନ ଖାଲି ହୋଇଯିବ । ଆକାଶରୁ ଭୁରୁ ଭୁରୁ ଗନ୍ଧ ଭାସି ଆସୁଛି । ଉତ୍ସବର କୋଳାହଳରେ ଆହୁରି କେତେ କେତେ ସୂକ୍ଷ୍ମ ଧ୍ୱନି ମିଶିଲା ପରି ଶୁଭୁଛି । ବିଜେ ଦାଣ୍ଡରେ ଜନ ସମୁଦ୍ର ନିଶ୍ଚଳ ଠିଆ ହୋଇଥିବ । କେତେ ଯୁଗରୁ ସେମାନେ ସେମିତି ଅପେକ୍ଷାକରି ରହିଛନ୍ତି ? ତାଙ୍କୁ କୃତାର୍ଥ କରିବାକୁ ଯାଉଛୁ ଠାକୁର ? ଦୁଇପାଦ ଯାଇ, ପାଦେ ରହିବାର ତୋ' ପହଣ୍ଡିଭଙ୍ଗୀ ମୁଁ ଜାଣେ ! ଏକମୁହାଁ ହୋଇ ଯାତ୍ରା କଲେ ସବୁ ଅଶୁଭ ଦୂର ହୁଏ । ତୁ ପଛକୁ ମନ ବଳାନା ! ମୋ ରାଜ୍ୟକୁ ଆଉ ଚାହାଁନା । ଏଠି ସବୁ ତାଳରୁ କ୍ଷୀର ଝରୁଛି । ସବୁ ଡେଂଫ

ଖାଲି । ତୋତେ ଦେବାଭଳି ମୋର ଆଉ କିଛି ନାହିଁ । ତୁ'ହିଁ ତ ମୋର ସର୍ବସ୍ୱ ହୋଇ ଏଠି ଝଟକୁଥିଲୁ ! ଏବେ ପଛକରି ଚାଲି ଯାଉଛୁ ! ମୋର ସର୍ବସ୍ୱ ଚାଲି ଯାଉଛି ! ମଧୁ-ସମୁଦ୍ର ଲହରୀ ସଂକୁଚିତ କରି ନେଉଛି । ଶୂନ୍ୟସମୁଦ୍ର ମାଡି ଆସୁଛି ପଛଆଡୁ ! ଏଣେ ଆଉ ତୁ ଚାହାଁନା ! ତାର ପାଖରେ ବୁଲାଣି ପଡିବ, ସେବକେ ! ତାକୁ ଘେରି ରହିଯାଅ ! ସେ ତୁମ ଫାଙ୍କ ଭିତରେ ଚାହିଁବାକୁ ବାଟ ଦିଅ ନାହିଁ । ବେଗି ଘୁଞ୍ଚେଇ ନେଇଯାଅ ମଞ୍ଚା ଉପରକୁ । ଦକ୍ଷିଣ ମୁହାଁ ବିମାନ ଗର୍ଭରେ ସେ ନିର୍ଦ୍ୱନ୍ଦ୍ୱରେ ବସିବାଯାଏ ମୁଁ ଶ୍ୱାସରୋଧି ରଖୁଛି । ନ ହେଲେ ତା ବୁକୁରେ ଏ ଝାଞ୍ଜିପବନ ବାଜିଯିବ ! ଏଇ ତୁମର ବେଳା,ହେ ମେଘମାନେ ଅଜାଡି ଦିଅ, ଯେତେ ତୁମର କୋହ ନଇଁ ଆସିଛି । ଉଜାଡି ଦିଅ, ମୋର ବନ ଉପବନର ପ୍ରାଣ ସମ୍ଭାରକୁ । ଶେଷ କରିଦିଅ ସବୁ ।

ହେ, ଖଞ୍ଜା ସେବକେ, ମନେ ରଖି କହିବ, ସେ ବଡ଼ ଦେଉଳିଆ ପଣ୍ଡା ପଡିହାରୀଙ୍କୁ । ହାତ ଓଠ ଧରି କହିବ ଯେ ଅତି ସୁକୁମାର ଏ ନୀଳମାଧବ । ବେଳ ସହଳେ ଗଣ୍ଡେ ଖାଇବାକୁ ଦେଉଥିବେ ! ଭୋକ କଲେ ସେ ଖାଲି ଅନାଏ । କିଛି କାହାକୁ କହେ ନାହିଁ । ବେଳ ସହଜ ପହୁଡକୁ ନେହୁରା ହୋଇ କହିବ । ପହୁଡ଼ ନ ଗଲେ ସଜଫୁଟିଲା ପଦ୍ମପରି ସେ ଡୋଳା ରଙ୍ଗିଲା ଦିଶିବ । ସର-ଲହୁଣୀ-ଖିଆ ମୁହଁ ଶୁଖିଯିବ । ମୋର ହୋଇ କହିବ । ତେଣିକି ସେମାନଙ୍କ ମନ । ତା' ମନ ! ମୁଁ କିଏ ଛାର; ସେଥିରେ ପାଟି ଫିଟେଇବାକୁ ।

ଘୁଞ୍ଚି ଯାଉଛି ଦକ୍ଷିଣ-ମୁହାଁ ରଥ । ଶୀତଳ ହୋଇ ଯାଉଛି, ଏ ବିବର୍ଣ୍ଣିତ ଭୂମି । ଏଇଠି ଏକଦା ଉଲଗ୍ନ ବଣଜନ୍ତୁ, ପାହାଡ଼, ଗଛ ଗହଣରେ ମୁଁ ଉଲଗ୍ନ ହୋଇ ବୁଲୁଥିଲା ବେଳେ ସେ ପତର ଡଙ୍ଗା ମୋ ସାଙ୍ଗରେ ଭସେଇ ଖେଳୁଥିଲା । କେତେ ଫୁଲ ତୋଳିଥିଲା। କେତେ କୋଳି ତୋଳିଥିଲା । ପତ୍ନୀର ସୋହାଗ, ପୁତ୍ରର ସ୍ନେହରେ ଆଚ୍ଛନ୍ନ କରି ରଖିଥିଲା । କଣ୍ଟା ବଣରେ କଅଁଳା ବାଛୁରୀ ପଶିଗଲେ ପହ୍ନେଇଥିବା ଗାଈ ପରି ହମ୍ବାଳୁ ଥିଲା ! ପୁଷ ମାସରେ ଶୁଖିଲା ପତ୍ର ପରି ସବୁ ଉଡିଯାଉଛି । ସରିଯାଉଛି ଏ ଦିହକର କାହାଣୀ ।

ନନ୍ଦିଘୋଷର ପିଠି ସୁନାର ଢାଙ୍କୁଣୀ ପରି ଦାଉ ଦାଉ । ତା' ପଛରେ ଯେଉଁ ରୂପ ଲୁଚିଛି ସେ କ'ଣ ମୁଁ ?- ହେ ସୂର୍ଯ୍ୟଦେବ, ତୁମେ ହିଁ ପୋଷଣ କର୍ତ୍ତା ! ତୁମେ କ'ଣ ସେ ଢାଙ୍କୁଣୀଟିକୁ ଆଡ଼େଇ ଦେଇପାରିବ ? ମୁଁ ଜାଣେ ସେ ପଛମୁହାଁ ଅପେକ୍ଷା କରିଛି ଚାହିଁ ଦେବାପାଇଁ ! ହେ ଅଗ୍ନି, ହେ ଅଦୃଶ୍ୟ ଦେବ ଦେବୀମାନେ, ତୁମେ କ'ଣ ଏଇ ଶୋଭନ ବିଜେ ମାର୍ଗରେ ମୋତେ ନେଇଯାଇ ପାରିବ ? ମୋର ଅଙ୍ଗ ସବୁ ନିଶ୍ଚଳ, ଜଡ଼, ନୀରବ, ପାଷାଣ । ଚାରିଆଡ଼େ ନିସ୍ତବ୍ଧ ଶୂନ୍ୟସମୁଦ୍ର ! ସେ ଜାଜ୍ଜ୍ୱଲ୍ୟମାନ ରଥର ପୃଷ୍ଠଦେଶ ଲୁଚି ଯିବା ପୂର୍ବରୁ ପ୍ରଣାମ ଜଣାଇ ମୁଁ ନିରବ ହୋଇଯିବି । ଏ ବାରେକ ଯାତ୍ରା ସରିଯାଉଛି, ହୋ ସୁଧୀଜନେ, ହେ ସେବକ ଭଗତେ, ହେ ପିତୃକୁଳ; ଋଷିକୁଳ; ହେ ଦଶଦିଗପାଳମାନେ, ଶୂନ୍ୟ ସମୁଦ୍ରରେ ଝାସ ଦେଉଛି ଏ ସ୍ମୃତି-ପଞ୍ଜୁରୀ !!- ଯେ ଆସିଥିଲା ସେ ବାହୁଡ଼ି ଯାଇଛି !!

□□□

⊙

ନୀଳାଚଳ ଆକାଶରେ ଅସଂଖ୍ୟ ଶ୍ୱେତ ପାରାବତ ଶ୍ରୀମନ୍ଦିର ବିମାନ ମଣ୍ଡଳକୁ ଚକ୍ରାକାର ପ୍ରଦକ୍ଷିଣ କରୁଛନ୍ତି । ଡେଣାର ସ୍ଫୋଟନରେ ପ୍ରଚାର କରୁଛନ୍ତି ବାହୁଡ଼ା ବିଜୟର ବାର୍ତ୍ତା । ଉଚ୍ଚାଟିତ ଅୟୁତ ଚାତକ ତୃଷିତ ଦୃଷ୍ଟିରେ ଉଚ୍ଚ ଆକାଶରୁ ବାରମ୍ବାର ଚାହୁଁଛନ୍ତି ଉତ୍ତରଦିଶାରେ ମନ୍ଥର ମେଘର ଉଦୟକୁ । ପୁରାତନ କଚ୍ଛପ ପରି ମନ୍ଦିର ଗାତ୍ରର ପଥର ଭିତରୁ ଚାହିଁ ରହିଛନ୍ତି ଉଦ୍‌ଗ୍ରୀବ ଶତାବ୍ଦୀମାନେ । ସ୍ୱସ୍ଥାନକୁ ଫେରୁଛନ୍ତି ନୀଳାଦ୍ରିନାଥ । ପଦ୍ମକେଶର ଭିତରୁ ଉଠି ଆସୁଛି ମଧୁମତ୍ତ ଭ୍ରମର । ସର୍ବାଙ୍ଗରେ ପଦ୍ମ-ପରାଗର ପ୍ରଲେପ । ଡେଣାରେ ପୁଷ୍ପରେଣୁର ଗୁରୁଭାର । କିଞ୍ଚିତ୍ ଲାଜଲାଜ ଭାବରେ ଆରକ୍ତ ଚାହାଁଣି । ମନ୍ଦ ହାସ । ଅଳସ ଗତି । ଅବଶ୍ୟ ଫେରିବି ବୋଲି ପ୍ରତିଶ୍ରୁତି ଗୁଞ୍ଜରୁଛି ମୁଗ୍ଧ- ବିଭୋର ଭ୍ରମର । ନବଦିନ ଘୋଷଯାତ୍ରା ପରେ ଫେରି ଆସୁଛନ୍ତି ଯାତ୍ରା- ବିଭୋର ଠାକୁରେ । ସେହିଭଳି ଲାଜ ଲାଜ ଭାବ । ସେହିଭଳି ଅଜସ୍ର ପ୍ରତିଶ୍ରୁତି । ଅସହାୟ ଅଥଚ ବିଭୋର ହୋଇ ଚାହିଁ ରହିଛନ୍ତି ସ୍ଥାବର, ଜଙ୍ଗମ, ଗ୍ରହ ତାରକାଦି ବସ୍ତୁପିଣ୍ଡ । ଯେଉଁ ମହାପ୍ରାଣ ଅବଲୀଳା କ୍ରମେ ଜଗତ୍‌ର ନାଭିବିନ୍ଦୁ ପର୍ଯ୍ୟନ୍ତ ସଞ୍ଚରି ଆସିଥିଲା, ସେ ଅପସରି ଯାଉଛି ତା'ର ଗୁହାଗର୍ଭକୁ । କିଛିକାଳ ପ୍ରକଟ ହୋଇ ଜଡ଼ବସ୍ତୁକୁ ବସ୍ତୁ-ପରିଚୟ ପ୍ରଦାନ କରିଛି । ଏଣିକି ସେ ନିଜେ ଅପ୍ରକଟ ହୋଇଯିବ । ନନ୍ଦିଘୋଷକୁ ପରିହାର କରି ପ୍ରଭୁ ସପ୍ତାବରଣର ମଧ୍ୟବିନ୍ଦୁରେ ରତ୍ନସିଂହାସନକୁ ମଣ୍ଡନ କରିବେ । ଏଣିକି ଦୁର୍ଲଭ, ଅକ୍ଷର ପୁରୁଷଙ୍କର କେବଳ ପ୍ରଶାସନରେ ହିଁ ସୂର୍ଯ୍ୟଚନ୍ଦ୍ର ଆତଯାତ ହେବେ; ନଦୀମାନେ ସମୁଦ୍ରଗାମିନୀ ହେବେ । ସେ ସ୍ୱୟଂ ପ୍ରଚ୍ଛନ୍ନ ହୋଇଯିବେ ଯୋଗମାୟାଙ୍କର ଅନ୍ତରାଳକୁ !

ଠାକୁରଙ୍କ ଘର ବାହୁଡ଼ାର ମଧୁର ମହୋତ୍ସବରେ ଲକ୍ଷ୍ମୀଦେବୀଙ୍କ ଉଆସ ପୁଲକିତ ହେଉଛି । ଛତିଶା ନିଯୋଗୀ ସେବକମାନେ ତତ୍ପର ହୋଇ ଉଠୁଛନ୍ତି ।

ଠାକୁରାଣୀଙ୍କ ନିର୍ଦ୍ଦେଶରେ ରୋଷଘରଠାରୁ ପହୁଡଘର ଯାଏଁ ମାର୍ଜିତ, ସଜ୍ଜିତ ହୋଇ. ଦେବଭୁବନକୁ ତୁଚ୍ଛ ପ୍ରମାଣ କରୁଛି । କର୍ପୂର-ଚନ୍ଦନ ଘଟିତ ତୀର୍ଥଜଳରେ ବିଜେଗମ୍ଭୀରା ଧୂଆଧୋଇ ହୋଇ ମହକୁଛି । ସଜଫୁଲର ଧଣ୍ଡାମାଳ ଗୁନ୍ଥି ଦେଇ କେହି ମାଳ ସେବକ ନିସ୍ତରିଲି, ନିସ୍ତରିଲି କହି ଲୋତକପାତ କରୁଛି । ପାଟପଟନି କୁଞ୍ଚିଦେଇ ଆଉ କେହି ପୁଲକି ଉଠୁଛି । ଧୂପ, ଦୀପ, ଆଲଟ, ଚାମରାଦି ସେବାରେ ଖଟିବା ପାଇଁ ଦିକ୍‌ପାଳମାନେ ପରମ ସମ୍ଭ୍ରମରେ ଅପେକ୍ଷାକରି ରହିଛନ୍ତି । ମଧୁର ପାୟସ, ବ୍ୟଞ୍ଜନ ପିଷ୍ଟକାଦି; ଗଜା, ଖଜା, ନାଡି, ବଡି ଦିବ୍ୟ ଶାଳିଅନ୍ନାଦି ଅସଂଖ୍ୟ କୁଡୁଆମାନଙ୍କରେ ଠାକୁରାଣୀଙ୍କ ନିର୍ଦ୍ଦେଶରେ ପ୍ରସ୍ତୁତ ହେଉଛନ୍ତି । ଶ୍ରୀମନ୍ଦିର ଶ୍ରୀମଣ୍ଡିତ ହୋଇ ଅପେକ୍ଷା କରୁଛି ରାଜାଧିରାଜଙ୍କ ପ୍ରତ୍ୟାବର୍ତ୍ତନକୁ ।

ମେଘନାଦ ପାଚେରି ବାହାରେ ଘଣ୍ଟଧ୍ୱନି ମନ୍ଦ୍ରିତ ହେଉଛି । ବିଜେ କାହାଳୀ ସ୍ୱର୍ଗଲୋକଯାଏଁ ଆକାଶକୁ ଆଲୋଡିତ କରୁଛି । ଶ୍ରୀମନ୍ଦିର ଶୀର୍ଷରେ ନୀଳଚକ୍ର ପରିଧି ଅନୁରଣିତ ହେଉଛି । ମୁଦୁସୁଲୀକୁ ପାଖକୁ ହକାରି ଲୋକମାତା ଆଡରୁଷା ଭଙ୍ଗୀରେ କହୁଛନ୍ତି- 'ଉଆସ ବାହାରେ କିଏ ସେହୁ ଏଡ଼େକ ସାହସରେ ଗହଳି କରୁଛି ଦେଖିବୁ ଗଲୁ ! ଏପରି ଅସଂଯତ ଅଶାଳୀନ ଗୋଳଚହଳ କରି ଦେବସ୍ଥଳୀର ମର୍ଯ୍ୟାଦା ଭଙ୍ଗ କରୁଥିବା କିଏ ସେହୁ ଗଉଡ ବାଉଡ ? କିଏ ସେହୁ ଅଚଞ୍ଚା ନିପଟ ହୁଣ୍ଡାପଣ ପ୍ରକଟ କରୁଛି ଦେଖିବୁ ଗଲୁ ! ତାକୁ ଛାଟିଆ ହାତରେ ଆଜ୍ଞା କରାଇବୁ ଏ ଗ୍ରାମ୍ୟ ଆଚରଣ ଆକଟ କରିବାକୁ; ଏ ଉଚ୍ଚକିତ, ଉନ୍ମତ୍ତ, ବେଢଙ୍ଗ ଅଶାସ୍ତ୍ରୀୟ କୋଳାହଳ ବନ୍ଦ କରିବାକୁ । ଆଡପ ମଣ୍ଡପରୁ ଠଉରାଇବୁ ଏ ହଟଗୋଳ ନାଟର ଗୋବର୍ଦ୍ଧନ କିଏ ! ମତୁଆଲା ହାତୀପରି ବିପୁଳ ଭୁଜ ଟେକି ବସିଛି ବୋଲି ତାକୁ ଦେଖି ଶଙ୍କି ଯିବୁ ନାହିଁ । ଶ୍ୱେତପଦ୍ମ ପରି ବିଲକ୍ଷଣ ଆୟତ ଡୋଳା ଦେଖି ଭ୍ରମି ଯିବୁ ନାହିଁ । ସେପରି କେହି ଜଣେ ଡକେଇତ ଏ ନୀଳାଦ୍ରିମଣ୍ଡଳରେ ମାତିଛି ବୋଲି ହୁରି ପଡିଛି । ଅଲକ୍ଷ୍ୟରେ ଥାଇ ଅନେଇବୁ- ତା' ଦେହସାରା ଧୂଳିସୂଧର ହୋଇନାହିଁ ତ' ! ଅଯତ୍ନ ଗଉଡିଆ ଢଙ୍ଗରେ କାଛେଣିଭିଡ଼ା ଲୁଗା ସେ ପିନ୍ଧି ନାହିଁତ' !- ଚୂଳରେ ଜାମୁଡାଳ, ଗୁଞ୍ଜରାମାଳ, ଅଜାତିପୁଷ୍ପ ଏଣେତେଣେ ଖଞ୍ଜିହୋଇ ସେ ଅବିନ୍ୟସ୍ତ ଦିଶୁନାହିଁ ତ' ! ଦେହସାରା ରଙ୍ଗମାଟି ବୋଳିହୋଇ ଯମୁନା କର୍ଦ୍ଦମରୁ ଉଠି ଆସିଥିବା ବଣୁଆ ହାତୀ ପରି ଦିଶୁନାହିଁ ତ ! ତା'ର ବୁକୁ, ବାହୁ, ମୁହଁରେ ଗ୍ରାମ୍ୟ କୁଙ୍କୁମ ଖଣ୍ଡଚିତ୍ରିତ ହୋଇ

ଲାଗିଥିବାରୁ ସେ ହେଠମାଥ ହୋଇ ଠିଆ ରହି ନାହିଁ ତ ! ଭଲକରି ଦେଖିବୁ ମୁଦୁସୁଲୀ, ସେ କିଏ !! ପାଇକ ଜଗୁଆଳିକୁ କହିବୁ କବାଟ କିଳି ମୁଦ ମାରିଦେବେ । ନିସନ୍ଧି କରି ଖୁଆଡ ଜଗିବେ । ମାଛି ପଡିଲେ ବେନିଖଣ୍ଡ ହୋଇଯିବ ଯେମିତି !"

ମେଘନାଦ ପାଚେରିରେ ବଜ୍ରକବାଟ ବଜ୍ରକିଳିଣି ପଡି ରୁନ୍ଧି ହୋଇଗଲା । ସ୍ୱାମିନୀଙ୍କ ବିନା ଆଜ୍ଞାରେ କେହି ପଶି ପାରିବେ ନାହିଁ । ହଟ କରିଛନ୍ତି ଗୃହଲକ୍ଷ୍ମୀ ! ମାନ କରିଛନ୍ତି ଲୋକଜନନୀ । ଦୃଶ୍ୟାଦୃଶ୍ୟ ଜଗତରେ ସମସ୍ତେ ତଟସ୍ଥ ଚାହିଁ ରହିଛନ୍ତି କିପରି ଏ ଅଲୌକିକ ମାନଭଞ୍ଜନ ସଂପାଦିତ ହେବ । କିପରି ସଂସାର ବ୍ୟୂହରୁ ଅତିକ୍ରମଣ କରି ଆସିଥିବା ପରମ-ପୁରୁଷ ଚୂଡ଼ାନ୍ତ ଦ୍ୱୈତକୁ ଆତ୍ମଭୂତ କରି ଅଖଣ୍ଡୈକ ସ୍ୱସ୍ଥାନରେ ପ୍ରବେଶ କରିବେ ।

ସିଂହଦ୍ୱାର ତଟ ଦେଶରେ ଫେନାୟିତ ଜନସମୁଦ୍ର ଲହଡି ଭାଙ୍ଗୁଛି । ସାତକୋଟି ପର୍ବତରୁ ଅଧିକ ଗୁରୁଭାର ବହନ କରି, ନୀଳାଚଳ ଶିଖର ଯାଏଁ ରଥ ବାହି ଆଣିଥିବାରୁ ଧଳା କଳା ଲକ୍ଷଣଯୁକ୍ତ ଘୋଡ଼ାମାନେ କ୍ଳାନ୍ତ ହୋଇ ଫୁଁଫୁଁକାର କରୁଛନ୍ତି । ଡାହୁକ, ସାରଥୀମାନେ ଅସକତ ଦିଶୁଛନ୍ତି । ରଥମାନେ କୃତାର୍ଥ କୃତଜ୍ଞତାରେ ନତଜାନୁ ହୋଇ ଅପେକ୍ଷା କରିଛନ୍ତି, କେତେବେଳେ ରଥାରୋହି ପରମପୁରୁଷ ଯାତ୍ରାଶେଷରେ ଅବତରଣ କରିଯିବେ । ବିଭିନ୍ନ ବାଦ୍ୟନାଦ ଭିତରେ ତୁରୀ ଧ୍ୱନି ଶୁଭୁଛି । ଆଳତୀ, ବନ୍ଦାପନା ପାଇଁ ସଜ ହେଉଛନ୍ତି ସେବକମାନେ । ରଥର ଦଶଦିଗ ଆବୋରିଥିବା ପାର୍ଶ୍ୱଦେବତାମାନଙ୍କୁ ବଳିଭୋଜ୍ୟ ଦିଆଯିବ ! ଇନ୍ଦ୍ରାଦି ଦେବଗଣ ଅର୍ଘ୍ୟ ନୈବେଦ୍ୟ ବେଳେ ଦୁନ୍ଦୁଭି ନାଦ କରିବେ । ପୁଷ୍ପବୃଷ୍ଟି କରିବେ ଆବର୍ତ୍ତକାଦି ମହାମେଘମାନେ । ଭକ୍ତସମୁଦ୍ରର ସ୍ନେହ- ତରଙ୍ଗ ଆଶ୍ଳେଷରୁ ସ୍ନିଗ୍‌ଧ ସୁକୁମାର ଠାକୁରେ ମୁକୁଳିଯିବେ । କିଏ ପିଠି ଆଉଁସି ଦେବ । କିଏ ଓଠ ଧରି ଦୋଷାଦୋଷ ନ ଘେନିବାକୁ ନେହୁରା ହେବ । ଆଉ କିଏ ବିପୁଳ ବକ୍ଷ ଉପରେ ଲୋଟିପଡି କୋହ ସମ୍ଭାଳି ନପାରି ତରଳି ଯିବ। ଉଦାର ସହଣିକ ପଣରେ ସେ ମନ୍ଦ ମଧୁର ହାସ; କରୁଣାବନ୍ତ ଡୋଳାରେ ସେ ଥମଥମ ଆପଣାପଣ; 'ମୁଁ ତୋର' ବୋଲି ଆଶ୍ଳେଷିନେବାର ସେ ଅନୁପମ ଭଙ୍ଗୀ ଦେଖି ବିଗଳିତ ହୋଇ ଯାଉଥିବେ ସମର୍ପିତ ଭକ୍ତକୁଳ । ତାଙ୍କର ଆତ୍ମାପୁରୁଷ କହୁଥିବ, 'ତୋମାର୍ ମତନ୍ ଦୟାଲ୍- ବନ୍ଧୁ ଆର୍ ପାବନା ।'

ବଡ଼ ଠାକୁରଙ୍କ ପାରୁଶରେ କରଛଡ଼ା ଦେଇ ଠିଆ ରହିଛନ୍ତି ସମସ୍ତେ ।

ହିମାଦ୍ରି ପରି ବିପୁଳ ଗମ୍ଭୀର ଠାକୁରେ କିଞ୍ଚିତ୍ ପଥକ୍ଲାନ୍ତ ଦିଶୁଛନ୍ତି ପରା । ସତେ ଅବା ସେଇ ବାକଟକୁଟିଆର ପ୍ରବର୍ତ୍ତାଣ ଏଡି ନ ପାରି ସେ ଯାତ୍ରାଗହଳି ଭିତରେ ପଶି ଆସିଥିଲେ । ଉତ୍‌ଫେନ ସଂସାରର ଏତେ ବିଚିତ୍ର କୋଳାହଳରେ ଅନାଗ୍ରହୀ ଅନନ୍ତ ମହାପ୍ରଭୁ ଉଦାସୀନବତ୍ ଗ୍ରହଣ କଲେ ବିବିଧ ଭାବାବେଗର ଉପଚାର । ସେ ଉନ୍ମନା ହୋଇ ଅପେକ୍ଷା କରିଛନ୍ତି ଓହ୍ଲେଇ ଯିବାକୁ । କୌଣସି ମତେ ଅର୍ଦ୍ଧନିମୀଳିତ ଆଖିରେ ସେ ଚାହିଁଛନ୍ତି ଯଥାଶୀଘ୍ର ବିପୁଳ ଭୁଜ ବିସ୍ତର କରି ପହୁଡ ଯିବେ । ଆଉ କିଛିରେ ମନ ନାହିଁ। କାହା ଆଡ଼କୁ ଦୃଷ୍ଟି ନାହିଁ । ବରବର୍ଣ୍ଣନୀ ସୁଭଦ୍ରାଙ୍କ ମୁଖମଣ୍ଡଳ କିଞ୍ଚିତ୍ ମଳିନ। ଏଡ଼େ ସୁକୁମାରୀ ରାଜକନ୍ୟାଙ୍କୁ ଏଡ଼େ କଠିନଶ୍ରମ ବଳେଇଗଲା କି ! ଯାତ୍ରା ପ୍ରସ୍ତାବ ଶୁଣିବା ମାତ୍ରେ ପରମ ଉତ୍ସାହରେ ସେ ସର୍ବପ୍ରଥମେ ଉଆସରୁ ବାହାରି ଆସିଥିଲେ । ଏଠି ଏପରି ଘୁ' ଘୁ ଗର୍ଜନ ହୁଏ, ଏପରି ଉନ୍ମତ୍ତ ଭକ୍ତମାନେ ରଥ ଭିଡ଼ିନେଇ ଉତ୍ସବ କରନ୍ତି, ନଅ ଦିନ ଭିତରେ ସୃଷ୍ଟି ଏପରି ଆନ ଆନ ମନେ ହୁଏ ବୋଲି ସତେ ଅବା ସେ ଜାଣି ନଥିଲେ । ସେ ଆମୋଦିତ ବୋଧ କରୁଥିଲେ ସୁଦ୍ଧା କ୍ଲାନ୍ତ ହୋଇ ପଡିଛନ୍ତି । ଆଉ ଥରେ ଯାତ୍ରାରେ ବାହାରିବେ ନାହିଁ ବୋଲି ସତେବା' ମନେ ମନେ ପଣ କରୁଛନ୍ତି ଦେବୀ ସୁଭଦ୍ରା । ସେବକମାନେ ବିବିଧ ପୁଷ୍ପଚନ୍ଦନ ଦେଇ ବନ୍ଦାପନା କରୁଛନ୍ତି । ଟାରଲାଗି ହେଉଛନ୍ତି ରଥମାନେ । ବିଜେକାହାଳୀ ବାଜୁଛି । ପାଟଚିମୁଳିକୁ ଡାକରା ପଡୁଛି । ଆଲଟ ଚାମର ସେବା ଚାଲିଛି । 'ବିଜେ ହେଉ, 'ମଣିମା' ଡାକରେ ଦଇତାପତି ଭେଣ୍ଡିଆମାନେ ଶ୍ରୀଭୁଜ ତଳେ କାନ୍ଧ ପତେଇ ପାଟଡୋରର ଝୁଲାଓଟରାକୁ ଅପେକ୍ଷା କରିଛନ୍ତି । ରଥମାନଙ୍କୁ ପୁଣ୍ୟଫଳ ଦାନ କରି ଏଥର ଓହ୍ଲେଇଯିବେ ଠାକୁରେ ।

ଭିତର ବେଢ଼ାରେ ନିକଟତମା ପରିଚାରିକାକୁ ଡାକି ଠାକୁରାଣୀ ଗୋପନରେ କହୁଛନ୍ତି, 'ବନ୍ଦାପନା ଥାଳିରେ ଚମ୍ପାଫୁଲ ସଜାଡି ରଖିଛୁ ତ ! ବଉଳମାଳରେ . ନାଗେଶ୍ୱର ଖଞ୍ଜିଛୁ ତ ! ପଦ୍ମପଳାଶର ଧଣ୍ଡା ପାଟସୂତାରେ ଗୁନ୍ଥା ହୋଇଛି ତ ! ପାଦ ପଖାଳିବା ପାଇଁ ସୁନାଝରୀରେ କର୍ପୂର ଜାଇଫଳ ସହିତ ପଦ୍ମମଧୁ ମିଶ୍ରିତ କରି ଶୀତଳ ଜଳ ସଂପାଦି ରଖିବୁ । ମୁକ୍ତାଝୁମ୍ପା ଲାଗିଥିବା ସୁଝୀନ ପାଟଉତ୍ତରୀ ରଖିବୁ ପାଦ ପୋଛିବା ପାଇଁ ।'ପହୁଡଘରେ ପୀତାମ୍ବର ପାଟ, ବୈଦୁର୍ଯ୍ୟହାର, କେୟୂର ସାଜି ରଖିବୁ । ସ୍ନାନ ପାଇଁ ଉଶୀର-କର୍ପୂର ଜଳ ରଖିବୁ । ମାଢଣା, ମଇଲମ ଉତାରୁ ଉଷ୍ମ

ପାୟସ, ଘୃତଘଟିତ ମିଷ୍ଟାନ୍ନ, ସ୍ନିଗ୍ଧମଧୁର ପିଠା କିଛି ସଜାଡି ରଖିବୁ । ତାମ୍ବୁଳସେବା ଯଥାବିଧି ପ୍ରସ୍ତୁତ ରଖିବୁ । ଆଜି ପରା ଦୀର୍ଘ ନଅଯୁଗ ପରେ ସେ ଫେରୁଛନ୍ତି । ଏତେକାଳେ ଉଆସ ମନେ ପଡିଲା, ମୁଁ ମନେ ପଡିଲି ପରା !"

ସିଂହଦ୍ୱାର ବଜ୍ରକବାଟ ଫାଙ୍କରେ ଜଗୁଆଳି ବାହାରକୁ ଚାହିଁଦେଇ ବରଡ଼ାପତ୍ର ପରି ଥରୁଛନ୍ତି । ଅରୁଣଖମ୍ବ ପାରି ହୋଇ ଆସିଲେଣି ବଡ଼ଠାକୁରେ! ଘୂର୍ମନ୍ତ ଶ୍ୱେତହସ୍ତୀ ପଳାସି ଆସିବାର ଭଙ୍ଗୀ । ସେ ଠେଲି ପଶି ଆସିଲେ ମେରୁମନ୍ଦର ଛିଟିକି ପଡିବେ ! ତାଙ୍କୁ ବାଧା ଦେବାକୁ କାହାର ସାଧ୍ୟ ! ଏଣେ ଠାକୁରାଣୀଙ୍କ ଆଜ୍ଞା ନ ହେଲେ କବାଟ ଫିଟିବ ନାହିଁ । ଆଉ ଟିକିଏ ବିଳମ୍ବ ହେଲେ ଠାକୁରେ ଆସି ଦୁଆରେ ଉଭା ହୋଇଯିବେ । କବାଟ ପଡିଛି ଦେଖିଲେ ଯଦି ମନ୍ଦ୍ରନାଦ କରି ଗର୍ଜି ଉଠନ୍ତି; ଯଦି ହଳାଗ୍ରେ ମନ୍ଦିରକୁ ଉତ୍ପାଟିତ କରି ସମୁଦ୍ରକୁ ନିକ୍ଷେପ କରନ୍ତି, କି ଅଘଟନ ନ ହେବ ? ତ୍ରାହି ତ୍ରାହି ଡାକି ଛାଟିଆ ପହଞ୍ଚିଲେ ଠାକୁରାଣୀଙ୍କ ଛାମୁରେ । – "ରକ୍ଷାକର, ଜଗଦ୍ଧାତ୍ରୀ, ଯେ ଦୁଆରେ ଆସି ଉଭା ହୋଇଛନ୍ତି ସେ ସ୍ୱୟଂ ବଡ଼ଠାକୁରେ। ଆଉ ବିଳମ୍ବ ହେଲେ ସେ ଭୁଜ ବଳରେ ନୀଳଗିରିକୁ ଉପାଡି ଫିଙ୍ଗି ଦେବେ । ଏମନ୍ତ ପ୍ରଳୟରୁ ଜଗତକୁ ରକ୍ଷାକର ଜନନୀ। ଯଥାବିଧି ଆଜ୍ଞା କର ।"

"ଆରେ ଚଣ୍ଡାଳେ ! ବଡ଼ ଠାକୁରଙ୍କୁ ଅବଜ୍ଞା କରିବାର ଧୃଷ୍ଟତା ତୁମର କେବଠୁ ହେଲାଣି ! କିଏ କହିଲା ତୁମକୁ କବାଟ କିଳି ତାଙ୍କୁ ଦୁଆରେ ଠିଆ କରାଇବାକୁ ? ତତ୍କ୍ଷଣାତ୍ ଦ୍ୱାର ଉନ୍ମୁକ୍ତ କର । ଆସନ୍ତୁ ଠାକୁରେ, ପଶନ୍ତୁ ଘରେ। ଯାଅ ଚଞ୍ଚଳ, ପୂଜକ ସେବକଙ୍କୁ ତତ୍ପର କରାଅ; ବନ୍ଦାପନା କରି ପାଛୋଟି ଆଣିବେ । ତାଙ୍କ ସେରେନ୍ତି ଭଉଣୀଙ୍କୁ ମଧ ପାଛୋଟି ଆଣିବେ । ଏମାନେ ତ' କିଛି ଦୋଷ କରି ନାହାନ୍ତି । ସରଳ ବିଶ୍ୱାସରେ ମାତି ଘର ଛାଡି ବାହାରି ଯାଇଥିଲେ ! ସେମାନେ ଆସନ୍ତୁ, ସେଥିରେ ଆପତ୍ତି ନାହିଁ ! ତା' ଉତ୍ତାରୁ ମୁଁ ନିଜେ ସିଂହଦ୍ୱାରକୁ ଆସୁଛି । କିଏ ତେଣିକି ଆସିବା ନ ଆସିବା କଥା ମୁଁ ବିଚାର କରିବି ! ଯାଅ !"

ସିଂହଦ୍ୱାର କବାଟ ପଡିଯାଇଛି ବୋଲି ହୁରି ପଡିଗଲା। ଥମିଗଲେ ଠାକୁରେ । ଶ୍ରୀମନ୍ଦିରକୁ ପ୍ରବେଶ ଦ୍ୱାରରେ ତାଙ୍କୁ ରୋଧିବାକୁ କିଏ ସାହସ କଲା ? ଆଗ୍ନେୟଗିରି ଗର୍ଭରେ ବହ୍ନିର ବିସ୍ଫୋରଣ ହେଲା । କମ୍ପି ଉଠିଲା ବାହୁଯୁଗଳ ! ବିଦ୍ୟୁତର ସ୍ଫୁରଣ ହେଲା ଭ୍ରୁକୁଟିରେ । ଶଙ୍କିତ ହେଲା ପୃଥିବୀ । ଆରକ୍ତ ଆଖି ତୋଳି ଚାହିଁଦେଲା

ବେଳକୁ ଅହୋଭାଗ୍ୟ ଜଗତର, ସିଂହଦ୍ୱାର ସାହାଣ ମେଳା ହୋଇ ସ୍ୱାଗତ ବନ୍ଦାପନାର ଅର୍ଘ୍ୟ ଅର୍ପଣ ହେଲା !! ଲୋଳଜିହ୍ୱ କ୍ରୋଧର ଫଣା ସମ୍ବରଣ କରି ଆଶୁତୋଷ ବଳଭଦ୍ର ଦେବ ପୁନର୍ବାର ପ୍ରଶାନ୍ତ, ଘୁମନ୍ତ ଭଦ୍ର ରୂପ ଧାରଣ କଲେ । ପୁନର୍ବାର ଅର୍ଦ୍ଧନିମୀଳିତ ଆଖିରେ କେବଳ ନିଦ୍ରାର ଇଙ୍ଗିତ ପ୍ରକାଶିତ ହେଲା । ତରବର ହୋଇ ସେବକମାନେ ଠାକୁରଙ୍କୁ ଏବଂ ସୁଭଦ୍ରାଙ୍କୁ ବିଜେ କରାଇ ନେଇଗଲେ ଉଆସ ଗମ୍ଭୀରାକୁ !

ନନ୍ଦିଘୋଷ ଉପରୁ ଯେଉଁ ଘନଘଟା ସିଂହଦ୍ୱାରରେ ପୁଞ୍ଜିଭୂତ ହେଲା ପରି ଦିଶୁଥିଲା, ତାହା ତା' ହେଲେ ବାସ୍ତବ ନୁହେଁ । ବଜ୍ରକବାଟ ସ୍ୱାଭାବିକ ଭାବରେ ଉନ୍ମୁକ୍ତ ନରହି ଆଉ ଏକ ବିକଳ୍ପରେ ସେପରି ଦିଶୁଥିଲା ହୁଏତ ! କବାଟ କାହିଁକି ଆମ ପାଇଁ ଅବରୁଦ୍ଧ ହେବ ? ଗୃହଲକ୍ଷ୍ମୀ ବରଂ ସ୍ୱାଗତ ସମ୍ବର୍ଦ୍ଧନା ପାଇଁ ବନ୍ଦାପନା ଅର୍ଘ୍ୟ ନେଇ ଅପେକ୍ଷା କରିଛନ୍ତି ! ପହଣ୍ଡି ବିଜୟ ବେଳେ ଯେଉଁଭଳି ଲଳିତ ଗତି ବିନ୍ୟାସ ଦେଖି ଦେବତାମାନେ ସୁଦ୍ଧା ମୁଗ୍ଧ ହୋଇଯାନ୍ତି, ସେଇ ଦେବଦୁର୍ଲଭ ଭଙ୍ଗୀରେ ଠାକୁରେ ପହଣ୍ଡି ବିଜେ ହୋଇ ଯାଉଛନ୍ତି । ବାଟରେ କାହାର ଆଶ୍ଳେଷ, କାହାର ପ୍ରାର୍ଥନା, କାହାର ସମର୍ପଣ, ସବୁ ଗ୍ରହଣ କରି କରି ଯାଉଛନ୍ତି । ତାଙ୍କୁ କିଏ ଅବା ପାଖରେ ପାଇ ଛାଡିଦେଇପାରେ ? ସେ କି ସହଜେ ମିଳିବା ଧନ ଗୋ ! ବିଚିତ୍ର ଗହଳି ଲଗାଇ କାଳିଆ ସାଆନ୍ତେ ବିଜେ ହେଉଛନ୍ତି । କାହାକୁ ଚାରିଦିନର କଣ୍ଟ, କାହାକୁ ଚାରିଯୁଗର ଅନୁରାଗ !- ଅକୃପଣ ବିତରଣ ହୋଇଯାଉଛି କରୁଣା ! ଅରୁଣ ଖମ୍ବ ପାରି ହୋଇ ଯାଉଛନ୍ତି ଠାକୁରେ ! ସମସ୍ତଙ୍କୁ ସ୍ତବ୍ଧ ଚକିତ କରି ସିଂହଦ୍ୱାର କବାଟ ସଶବ୍ଦେ ଅବରୁଦ୍ଧ ହୋଇଯାଉଛି । ଅବରୁଦ୍ଧ ହୋଇଯାଉଛି ପହଣ୍ଡି ବିଜୟ ! ଘଣ୍ଟ-ଘଣ୍ଟା ଧ୍ୱନି ସ୍ତବ୍ଧ ! ହତବାକ୍ ସମସ୍ତ ଜନ ସମୁଦ୍ର ।

"ଆପଣ କିଏ ?"- ପଚାରୁଛି ବଜ୍ର କବାଟ ! "କାହିଁକି ଏଠାକୁ ଆସିଛନ୍ତି ? ଆପଣଙ୍କ ଆଚରଣରୁ ଜଣାଯାଉଛି ଆପଣ କୌଣସି ଅଜ୍ଞାତ କୁଳଶୀଳ ହୋଇଥିବେ । ବିଶୁଦ୍ଧ ଆରଣ୍ୟକ ନ ହେଲେ ଆପଣଙ୍କର ଏ ଅଦ୍ଭୁତ ଗତିବିଧି ବୁଝି ହେବନାହିଁ । ଏ ଉଆସର ମାଲିକେ ବହୁକାଳ ହେଲା ନିରୁଦ୍ଦିଷ୍ଟ ଅଛନ୍ତି । ସେ ଆସିବା ଯାଏଁ ଆପଣଙ୍କୁ ସେଇଠି ଅପେକ୍ଷା କରିବାକୁ ହେବ । ଏ ଭିତରେ ମହାରାଜ୍ଞୀଙ୍କ ଶାସନ । ତଦନୁସାରେ ଆପଣଙ୍କ ପ୍ରବେଶ ନିଷିଦ୍ଧ ।"

"କିଓ, ପରିଚାରକେ, ମୁହଁ ସମ୍ଭାଳି କଥା କହୁନାହିଁ କାହିଁକି ?" ଉତ୍ତର ଦେଲା ଆହତ ଜନତା, 'କାହାକୁ ଚାହିଁ କି କଥା କହୁଛ ? ଏ ପରା ସ୍ୱୟଂ ନୀଳାଦ୍ରିନାଥ, ଭକ୍ତଚିନ୍ତାମଣି, ଦୁଃଖୀଜନବାନ୍ଧବ, ଜଗନ୍ନାଥ ! ଶ୍ରୀମନ୍ଦିରର ଅଧିକାରୀ ପରା ଏଇ ! ଆଖି ଥାଇ ଏଠି ତାଙ୍କୁ ନ ଚିହ୍ନିବ ଏପରି ଅଧମ କିଏ ଅଛି ? ତୁମକୁ ଚକାନୟନ ଦିଶୁ ନାହିଁ କି ? ବଳିଆର ଭୁଜ, ନବନୀରଦ କାନ୍ତି ଆଉ ଭଲା କାହାର ଦେଖିଛ ? ତଥାପି ତୁମେ ଚିହ୍ନି ନ ପାରି ଦ୍ରୋହ ଆଚରୁଛ ? ତୁମକୁ ସିନା ଦିଶୁନାହିଁ; ତୁମ ସାଆନ୍ତାଣୀଙ୍କୁ କହ ନିଜେ ଆସି ତନଖି କରିନେବେ !"

"ଏ ନଗ୍ରରେ କୁଳ ସାଆନ୍ତାଣୀମାନେ ତୁମ ପରି ହାଟୁଆ ନୁହନ୍ତି । ତୁମେ ତୁମ ବଣ୍ୟ କୁଳାଚାରରେ ଯାହା କହୁଛ ତାହା ବୁଝିପାରୁ ନାହିଁ । ଆମ ସାମନ୍ତାଣୀଙ୍କୁ ଆମେ ସୁଦ୍ଧା କଳି ପାରିନାହୁଁ । ସେ ସ୍ୱୟଂ ପ୍ରକଟ ନ ହେଲେ ଅରୂପା, ଅପର୍ଣ୍ଣା ଅନିର୍ବଚନୀୟାଙ୍କୁ କିଏ ଅବା ଚର୍ମ ଚକ୍ଷୁରେ ଦେଖି ପାରିବ ? ତୁମେ ଯେଉଁ ନୀଳାଦ୍ରିନାଥଙ୍କ କଥା କହୁଛ ତାଙ୍କୁ ମଧ ତୁମେ ଜାଣି ନାହଁ । କେବେ ସାକ୍ଷାତ୍ ହେଲେ ତାଙ୍କୁ ଆମ ସାମନ୍ତାଣୀଙ୍କ କଥା ପଚାରିବ । ସେ ତାଙ୍କ ହୃଦୟ କମଳରେ ଅନୁସନ୍ଧାନ କରି ତୁମକୁ ବୁଝାଇଦେବେ !"

କୌତୁକପ୍ରିୟ କଳାବଦନରେ ସ୍ମିତ ରେଖା ପ୍ରକାଶ କରି ଚାହିଁ ରହିଛନ୍ତି ଠାକୁରେ । ଅଦଭୁତେ ଶୂନ୍ୟରୁ ଶୁଭୁଛି- 'ଏଥିରୁ ତୁମେ କ୍ଷାନ୍ତ ହୁଅ । ସାଆନ୍ତାଣୀ ହଟ କରିଥିବା କଥା ଆମ୍ଭଙ୍କୁଗୋଚର ଅଛି । ଆମ୍ଭେ ଅଜ୍ଞାତ କୁଳଶୀଳ ହୋଇପାରୁ, କିନ୍ତୁ ଆମ୍ଭେ କୌଣସି ଡକେଇତ ନୋହୁ । ଶ୍ରଦ୍ଧାରେ ଆମ୍ଭଙ୍କୁ ଯେତେବେଳେ ଯେଉଁଭଳି ବେଶ ମଣ୍ଡିଦେଲେ ଆମ୍ଭେ ତାହା ସୀଉକାର କରିଥାଉ । ଉଆସରେ ହୀରାମାଳ ପରି ପ୍ରବାସରେ ବନମାଳ ଅଥବା ଜାମୁଡାଳ ସେଥିପାଇଁ ଆମ୍ଭର ପ୍ରିୟ । ସେଥିକୁ ଦୋଷ ଦେଲେ ପକ୍ଷପାତ ବିଚାର ହୋଇଯିବ । ନାରୀ ଜନୋଚିତ ଏକବୁଝା ଆଚରଣ ସହିତ ଆମ୍ଭର କିଛି କିଛି ପରିଚୟ ଅଛି । ସାଆନ୍ତାଣୀଙ୍କ ଇଚ୍ଛାମତେ ଆମ୍ଭେ ଏ ସମସ୍ତ ବେଶ ମୁହୂର୍ତ୍ତକରେ ତ୍ୟାଗ କରିଦେଇପାରୁ । ସେଥିକୁ ଏତେ ମାନ କାହିଁକି ? ଆମ୍ଭଙ୍କୁ ଏ ଦାଣ୍ଡ ମଝିଟାରେ ଏପରି ହଟହଟା ନ କରନ୍ତୁ । ଆମ୍ଭର ମାଲିକପଣରେ ଏମାନଙ୍କର ସଂଶୟ ନ ହେଉ । ଆମ୍ଭର ମାନମର୍ଯ୍ୟାଦା ଦି'କଡ଼ାର କରିଦେଲେ ସାଆନ୍ତାଣୀଙ୍କ ମାନ କେଉଁ ଆଶ୍ରାରେ ରହିବ ?

କବାଟ ଫାଙ୍କରୁ ବିଦ୍ୟୁତ୍‌ର ସ୍ଫୁରଣପରି ଲକ୍ଷ୍ମୀ ଠାକୁରାଣୀଙ୍କ ପ୍ରକାଶ ହେଲା । ସେହିପରି ଶୁଭିଲା, 'ଗାଧୁଆ ତୁଠରେ ଯେ ନାରୀଙ୍କ ପାଲଟା ବାସ ଚୋରି କରି ପାରନ୍ତି ସେପରି ପୁରୁଷଙ୍କର ହଟହଟା ହେବାରେ ଲାଜ କ'ଣ ? ନିରୋଳା ବେଳେ ନିଜେ କେବଳ ନିରାବରଣ ରୂପ ଦେଖିବାକୁ ଇଛା, କିନ୍ତୁ ରାଜସଭାରେ ଗୋଟିଏ ନାରୀକୁ ସେହିପରି ବିବସ୍ତ୍ରାକଲାବେଳେ କାହିଁକି ବାଧି ଯାଉଥିଲା ? ଛାଡନ୍ତୁ । ଆପଣ ଯଦି ଏ ଉଆସର କର୍ତ୍ତା, ଆପଣ ଥିଲେ କୁଆଡ଼େ ? ଏମିତି ଧୂଳି ଧୂସର ହୋଇ ଆସିଲେ କେଉଁଠୁ ? ଗଲେ କେମିତି ? ରୋଗରୁ ଉଠି ଦେହ ଟିକିଏ ବାଟକୁ ଆସିଛି ନା ନାହିଁ, ଚୋରଙ୍କ ପରି କାହିଁକି ଏଠାରୁ କାହାକୁ ନ କହି ଚାଲିଗଲେ ? ନଅ ଦିନ କାଳ ଖାଇଲେ କ'ଣ- ଭଉଣୀଙ୍କୁ ନେଇ ରହିଲେ କେଉଁଠି ? କେଉଁ ଗୁମ୍ଫାରେ ଯାଇ ଲୁଚିଥିଲେ ?"

'ମାଲିକମାନେ ହିଁ କାହାକୁ କିଛି ନ କହି ନିଜ ଇଛାରେ ଯାତାୟାତ କରନ୍ତି ବୋଲି ଆମ୍ଭର ଧାରଣା ଥିଲା । କେହି କେହି ଚଞ୍ଚଳା ସ୍ୱଭାବ ବୋଷରୁ ସେପରି ଅବାଧ ବୁଲୁଥିବାର ଦୃଷ୍ଟାନ୍ତ ଆମ ପାଖରେ ଅଛି । ଆମ୍ଭେ କେବଳ ଆମ୍ଭର ବ୍ରତ ଅନୁସାରେ ପତିତ ଉଦ୍ଧାର ପାଇଁ ନବଦିନ ଯାତ୍ରାରେ ଯାଇଥିଲୁ । କିନ୍ତୁ ଅନ୍ନପୂର୍ଣ୍ଣେଶ୍ୱରୀ ତାଙ୍କ କଟାକ୍ଷ କାର୍ପଣ୍ୟରେ ଏତେ ଦରିଦ୍ର ଦୁଃଖୀ ସୃଷ୍ଟି କରିଛନ୍ତି ଯେ ଆମ୍ଭେ ସେମାନଙ୍କ ଗୁହାରି ଶୁଣି ପାରିନାହୁଁ ।"

"ଆପଣଙ୍କ, କୁକର୍ମର ପ୍ରମାଣ ନଥାଇପାରେ କିନ୍ତୁ କୁଶିକ୍ଷାର ପ୍ରମାଣ ଯଥେଷ୍ଟ ମିଳି ଯାଉଛି । ଏପରି କଥା କହିବାର ଭଙ୍ଗୀ ଏ ନଗ୍ରର ପରମ୍ପରା ନୁହେଁ । ଆପଣ ଗୁହାରି ଶୁଣିନାହାନ୍ତି କାରଣ କେବେ ଶୁଣନ୍ତି ନାହିଁ । ଚାରିଯୁଗରେ ଚାରୋଟି ଯଶ ସ୍ଥାପନ କରି ତାକୁ ସ୍ତବଗାନ କରାଉଛନ୍ତି ସିନା ! ଅନୁସରଣ କରି କରି କାଳ ବିତି ଗଲେ ସୁଦ୍ଧା କଣାଏ କରୁଣା ବିତରଣ ନହେବା କଥା ଆମେ ଜାଣୁ ! ଆଉ ବାକି ରହିଲା କର୍ତାପଣ । ତାହାତ ସମସ୍ତଙ୍କୁ ଜଣା ! ସିଂହାସନରେ ବିଜେ ହୋଇ ଖାଲି ମଟ ମଟ ଚାହିଁବା ଛଡ଼ା ଏମନ୍ତ ସାକ୍ଷୀ ପୁରୁଷଙ୍କର ଆଉ କ'ଣ ଦାୟିତ୍ୱ ଅଛି ? ଦିନେ ରୋଷଘର କଥା ନ ବୁଝିଲେ ପରା ସର୍ବମୟ କର୍ତ୍ତା ଉପବାସ ରହିଯାନ୍ତି ବୋଲି ଅପବାଦ ରହିଛି ! ଯେଉଁ ପୋଡପିଠାଟି ଭୋଜନ ଶେଷକୁ ଏଡ଼େ ସ୍ୱାଦିଷ୍ଟ ଲାଗେ ତାହା କିପରି ହୁଏ, କେଉଁଠୁ ଆସେ, ତା' କ'ଣ ସୁନାଥାଳି- ଭୋଗଖିଆ ସାଆନ୍ତକୁ

ଜଣାଅଛି ? ଆପଣଙ୍କର ଅନନ୍ତ କୋଟି ଜୀବଙ୍କୁ ଆହାର ଦେଇ ଯୁଗ ଯୁଗ ଧରି ପୋଷୁଛି କିଏ ? ସୁଖ ଦୁଃଖ, ଅନ୍ଧାର ଆଲୁଅ ଭିତରେ ଲକ୍ଷ କୋଟି ବର୍ଷ ସଂସାର ଯାତ୍ରା ନିର୍ବାହ କରାଉଛି କିଏ ? କ'ଣ ପାଳନ କର୍ତ୍ତା ସ୍ୱୟଂ ଏ କର୍ମ କରନ୍ତି ? ଯଦି ଆପଣଙ୍କ ଇଚ୍ଛାରୂପେ କାର୍ଯ୍ୟ କରି ଆମେ ହିଁ ଜଗତରେ ଦରିଦ୍ର ଦୁଃଖୀ ସୃଷ୍ଟି କଲୁ ଏବଂ ସେଥିପାଇଁ ଆମକୁ ଏପରି ପରିହର୍ତ୍ତବ୍ୟା ବୋଲି ମଣିମା ବିଚାରୁଛନ୍ତି, ତେବେ, ଅନ୍ୟତ୍ର ବ୍ୟବସ୍ଥା କରନ୍ତୁ ।'

ଆକାଶରେ ଆଷାଢ ମେଘ ଗୁମୁ ଗୁମୁ ଡାକୁଛି । ବଡ଼ ବଡ଼ ବରକୋଳିଆ ଟୋପା ଝଡି ପଡୁଛି । ଠାକୁରେ ମୃଦୁ ଭର୍ତ୍ସନାପରି ସେ ବାରିପାତକୁ ସହନ କରୁଛନ୍ତି । ତାଙ୍କୁ ସେପରି ଅସହାୟ ତିନ୍ତିବା ଦେଖି ଭାଳେଣି ପଡିଯାଉଛି !

ଲୌକିକ ରୀତିରେ କାହିଁକି ଏହାର ସମାଧାନ କରି ଦେଉ ନାହାନ୍ତି, ଠାକୁରେ ? କେହି ଜଣେ ଭକ୍ତ ଆଗଭର ହୋଇ ଆସୁଛନ୍ତି ! କହୁଛନ୍ତି, 'ନାରୀ ସ୍ୱଭାବତଃ ଅଭିମାନୀନୀ । ନବଦିନ ଯାତ୍ରା ପରେ କିଛି ଉପହାର ଉତ୍କୋଚ ଦେଖାଇ ଦେଲେ ସୂର୍ଯ୍ୟୋଦୟରେ କୁହୁଡି ପରି ମାନଭଞ୍ଜନ ହେବା କଥା ବହୁ ସହସ୍ର ଥର ପରୀକ୍ଷିତ ହୋଇସାରିଛି ! ଏଇ କାଶ୍ମୀର କଙ୍କଣ, ହାର ତାଟଙ୍କ ଦେଇ ଚେଷ୍ଟା କରାଯାଉ ।" ଆଉ କିଏ କହିଲେ, 'ଏଇ ବାରାଣସୀ ନୀଳାମ୍ବର ଉପରେ ସୁନା ଛାଉଣୀ ହୋଇ ଝଟକୁଛି । ସ୍ୱୟଂ ଶିବାନୀଙ୍କର ଏହା ଅତି ପ୍ରିୟ ପରିଧାନ । ସେବାରେ ନିଯୁକ୍ତ ହେଉ ! ଭାରତ ଭୂମିର ବିଭିନ୍ନ ପ୍ରାନ୍ତରୁ ଏଇ ସମସ୍ତ ନାରୀ ମନୋହରୀ ମୁଦି, ମାଳି, ଶଙ୍ଖା, କାଞ୍ଚଲା ଆସିଛି । ଉତ୍କଳ ଖଣ୍ଡରୁ ଏ ସବୁ ମାଣିଆବନ୍ଧି, ବ୍ରହ୍ମପୁରୀ, ପଣ୍ଟିମୀ ପାଟ ଆସିଛି ! ସେବାରେ ଲାଗୁ !" ସ୍ତୂପୀକୃତ ହେଲା ବସ୍ତ୍ର ଅଳଙ୍କାର ମଣିକାଞ୍ଚନର ଉପଢ଼ୌକନ ! ସବୁକିଛି ବ୍ୟର୍ଥ ହେଲା । ଲୌକିକ ଚେଷ୍ଟାରେ ଅଲୌକିକ ମାନଭଞ୍ଜନ ହେଉନାହିଁ । ବର୍ଷା ହେଉଛି । ଅଭିମାନିନୀଙ୍କ ଥମଥମ ମୁହଁ ପରି ମେଘ ଘନୀଭୂତ ହେଉଛି ଆକାଶରେ । ଯାହାର ପଦରେଣୁ ସିଞ୍ଚିତ ହେଲେ ଅଷ୍ଟରତ୍ନ ବର୍ଷା ହୁଏ, କିବା ଐଶ୍ୱର୍ଯ୍ୟରେ ସେହି ତ୍ରିପୁରେଶ୍ୱରୀଙ୍କୁ ଆକୃଷ୍ଟ କରାଯାଇ ପାରେ ?

ଏମନ୍ତ ସମୟରେ କିଏ ସେହୁ ଗୋସ୍ୱାମୀ ଜୟଦେବଙ୍କ ପରି ଜଣେ ମହାତ୍ମା 'ବାଟଛାଡ' 'ବାଟଛାଡ' କହି ଗହଳି ଭେଦି ପଶି ଆସୁଛନ୍ତି ? ତାଙ୍କ ଆଗରେ ତିନୋଟି ବୃହତ୍ ବାଇହାଣ୍ଡିରେ ଦିବ୍ୟ ଗୌଡୀୟ ରସଗୋଲକ ପରିପୂର୍ଣ୍ଣ ହୋଇ

ରହିଛନ୍ତି ।... 'ଆସନ୍ତୁ, ମହାପ୍ରଭୁ ! ଏ ପଦାର୍ଥ ସ୍ୱାମିନୀଙ୍କ ଅତି ପ୍ରିୟ ବୋଲି ଆମେ ସବୁ ଗମ୍ଭୀରା ସେବକେ ବହୁକାଳୁ ଜାଣିଛୁ । ଏହା ଉପରେ ମା'ଙ୍କର ମଧୁଦୃଷ୍ଟି ପଡିଲା ଉତ୍ତାରୁ ଆମ୍ଭେ ମଣିମାଙ୍କ ମଣୋହି ଉଛୁର ହୋଇଯାଉଛି ବୋଲି ଛାମୁରେ ଜଣାଇବୁ । ଠାକୁରେ ଅଭୁକ୍ତ ରହିବା କଥା କସ୍ମିନକାଳେ ମା'ଠାକୁରାଣୀଙ୍କୁ ସହ୍ୟ ହୁଏନାହିଁ । ଅବଶ୍ୟ କବାଟ ଫିଟିବାକୁ ଆଜ୍ଞା ହୋଇଯିବ ।... ତେଣିକି ସାମାନ୍ୟ ନ୍ୟୁନ ଭାବରେ ହାତ ଓଠ ଧରା ଦ୍ୱାପର ଲୀଳାର ଅବଲୟ ପ୍ରସ୍ତାବ ଦେବାକୁ ଆମେ ଛାର ସେବକ ମାତ୍ର କି ଭାଜନ ? ସେତିକି ମାତ୍ର ଉପଚାରରେ ମେଘ ଉତାଡରୁ ଚନ୍ଦ୍ରୋଦୟ ହୋଇଯିବ ବୋଲି ସଂସାର-ପ୍ରବୀଣ ପରିଣତ ବୃଦ୍ଧ ଆଶା କରୁଅଛୁ ! ରସରାଜଙ୍କୁ ଆଉ ଅଧିକ କି କହିବା ?"

ବଜ୍ରକବାଟ ଝୀନ କନାଟି ବାଡ ପରି ଅପସରି ଯାଉଛି । ଗିନି ପଖାଉଜ ସଙ୍ଗତରେ ଅତି ଲଳିତ ବୈଷ୍ଣବ କଣ୍ଠରେ କେହି ଜଣେ ବୋଲୁଛନ୍ତି, 'ପ୍ରିୟେ, ଚାରୁଶୀଳେ, ମୁଞ୍ଚମୟି ମାନମନିଦାନମ୍ !' ସୁନାଝରିରୁ ତୀର୍ଥଜଳ ସିଞ୍ଚନ କରି ବାହୁରେ ଚଂପାମାଳା ମଣ୍ଡିଦେଲା ବେଳେ ଉଲ୍ଲସିତ ସିନ୍ଧୁମାନେ ମଧୁକ୍ଷରଣ କରୁଛନ୍ତି । ମଧୁବାହୀ ପବନ ଚାମର ଚାଳନ କରୁଛନ୍ତି । ଦଶମୀ ଚନ୍ଦ୍ରର ପୀନାଗ୍ରରୁ ଚିପୁଡି ହୋଇ ଅଖଣ୍ଡ ସୋମରସ ସୂକ୍ଷ୍ମ ଶୀକର ପରି ଆକାଶ ପରିପୂର୍ଣ୍ଣ କରୁଛି । ଶ୍ରୀମନ୍ଦିର-ବିଗ୍ରହ ମଧୁଚକ୍ର ସଦୃଶ ତିଳେ ତିଳେ ଅମୃତାୟିତ ହେଉଛି । ମହାଲକ୍ଷ୍ମୀ-ସମନ୍ୱିତ ଠାକୁରେ ପାବଚ୍ଛ ମଣ୍ଡନ କଲାବେଳେ ଏକାନ୍ତ ଘନରସସିକ୍ତ ହୋଇ କୃତାର୍ଥ ମଣୁଛି ଆବ୍ରହ୍ମକୀଟ ପର୍ଯ୍ୟନ୍ତ ଚରାଚର ବିଶ୍ୱ !!

□□□

⦿

**ଘୋ**ଷଯାତ୍ରାର ଶ୍ରମ-ସ୍ୱୀକାର ପରେ ପ୍ରଭୁ ଆସି ସ୍ୱେଚ୍ଛାରେ ରତ୍ନସିଂହାସନ ମଣ୍ଡନ କଲେ । ବିଶ୍ୱ ବ୍ରହ୍ମାଣ୍ଡର ଅଚଳ, ସନାତନ କେନ୍ଦ୍ର ସ୍ଥିର ହେଲା । ଆକାଶାଦି ମହାଭୂତମାନେ ସ୍ୱଗୁଣନିଷ୍ଠିତ ହେଲେ । କକ୍ଷାରୂଢ଼ ହେଲେ ଗ୍ରହପିଣ୍ଡ ଏବଂ ନକ୍ଷତ୍ରମାନେ ।

ଏଣିକି ଆଷାଢର ନୂଆ ମେଘପଟଳ ନୀଳାଦ୍ରିରେ ଘନୀଭୂତ ହୁଅନ୍ତୁ । ଝରିପଡୁ କରୁଣାର ଅବିଶ୍ରାନ୍ତ ଧାରା । ପୃଥିବୀ ମଧୁମତୀ ହେଉ । ସବିତା ମଧୁମାନ୍ ହୁଅନ୍ତୁ । ପବନ ପରାଗ-ବାହୀ, ପର୍ବତମାନେ ଧାରାସ୍ରାବୀ, ଗଛଲତାମାନେ ଫଳପୁଷ୍ପ-ଶୋଭିତ ହୁଅନ୍ତୁ । ପକ୍ଷୀମାନେ ପରିପୁଷ୍ଟ ହୁଅନ୍ତୁ । ମାନବମାନେ ମନସ୍ୱୀ ହୁଅନ୍ତୁ । ଜୀବନ ଭୋଗ-ଭାଗ୍ୟମୟ ହେଉ। ମୃତ୍ୟୁ ସ୍ୱାଭାବିକ, ଶୁଭଙ୍କର ହେଉ ।

ପ୍ରଭୁ ସ୍ୱେଚ୍ଛାରେ ରତ୍ନସିଂହାସନରେ ବିଜେ ହେବା ଏ ବିପୁଳ ବସ୍ତୁସଂଘର ପରମ ସାର୍ଥକତା । ସୂର୍ଯ୍ୟରେ ତେଜ ପରି, ଅଗ୍ନିରେ ତାପ ପରି, ବିଦ୍ୟୁତ୍‌ରେ ଝଟକ ପରି ତାହା ଏ ଜୀବନର ଚରମ ଐଶ୍ୱର୍ଯ୍ୟ, ଆମର ପରମ ସୌଭାଗ୍ୟ । ସେ କେବଳ ଉଭାସିତ ହେଲେ ହିଁ ସେହି ଅନୁସାରେ ଏ ସମସ୍ତ ପ୍ରତିଭାତ ହୁଅନ୍ତି ।

ଜୀବ ଯାତନାର ଅନ୍ତ ନାହିଁ; ଦୁଃଖର ଅନ୍ତ ନାହିଁ । ଜଗତ୍ ପ୍ରବାହରେ ଯାହା ଥିଲା, ତତ୍ତ୍ୱତଃ ତାହା ଅଛି ଏବଂ ରହିବ । ଯେ ସାକ୍ଷୀପୁରୁଷ ଭିତରେ ବାହାରେ ଅନବରତ ଦ୍ରଷ୍ଟା ରୂପେ ଚାହିଁ ରହିଛି ସେ ସବୁ ଦେଖେ, ସବୁ ଜାଣେ; ଅଥଚ ତାକୁ କେହି ଦେଖି ପାରନ୍ତି ନାହିଁ, କିମ୍ବା ଜାଣି ପାରନ୍ତି ନାହିଁ । ଏଇମାତ୍ର ଲୋକାଚାରରେ ତାଙ୍କର ପହୁଡ ଭାଙ୍ଗି ମଙ୍ଗଳ ଆଳତି ଅର୍ପିତ ହେଉଛି । ଆପତ୍ତି, ଅଭିଯୋଗ, ଆର୍ତ୍ତି ବିଳାପର ଏ ବେଳା ନୁହେଁ । ତୀର୍ଥ ଜଳରେ ପ୍ରଭୁଙ୍କ ଶ୍ରୀମୁଖ ପଖଳା ସରିଯାଉ । ଅବକାଶ ବିଧି ବଢିଯାଉ । କାଞ୍ଚିପୁରୀ ଯୋଡ ପ୍ରଭୁ ଅଙ୍ଗଲାଗି ହୁଅନ୍ତୁ । ଚନ୍ଦନ

ଚାମର ସେବାସରୁ । ଧଣ୍ଡାଲାଗି ହୁଅନ୍ତୁ; ତୁଳସୀ ଭୂଷଣ ହୁଅନ୍ତୁ । ଅଳଙ୍କାର ମଣ୍ଡି ହୁଅନ୍ତୁ । ଧୂପ ଦୀପ ଆଗ୍ରହ ଅର୍ପଣ ପରେ ଖଇଖିଆ ବାଲ ଭୋଗ ଉଠିଯାଉ । ବିଡିଆ ଲାଗି ହୋଇ ଦରହସିତ ମୁହଁରେ ଶ୍ୱେତପଦ୍ମ ଡୋଳା ଟେକି ଚାହିଁଲା ବେଳେ 'ହରି, ହରି' ବୋଲ ଭଗତେ ! ଅନ୍ତର୍ଯ୍ୟାମୀ ପୁରୁଷ ପାଖରେ ଦୁଃଖ ବଖାଣିବାର ବାହୁଲ୍ୟ କର ନାହିଁ । ଅପ୍ରାଧ କର ନାହିଁ । ପ୍ରଭୁ, ତାଙ୍କ ନିଜ ପ୍ରଭୁପଣରେ ବିରାଜିତ ହେବା ହିଁ ଯଥେଷ୍ଟ । ନିଜ ମହିମାରେ ନିର୍ନିମେଷ ଚାହିଁବା ହିଁ ଯଥେଷ୍ଟ । ରତ୍ନସିଂହାସନରେ ଏମନ୍ତ ଠାକୁର ଶ୍ରୀମନ୍ତ ହୋଇ ଉଭାରି ରହିବା ହିଁ ଆମର ମହାଭାଗ୍ୟ । ଆତ୍ମାପରି ସୁକୁମାର ସୁଢଳ, ନିର୍ଲିପ୍ତ, ସଦାତୁଷ୍ଟ ହୋଇ ରହିଥାଅ ଠାକୁରେ; ଅଗଣିତ ଭକ୍ତଙ୍କ ନୟନାଭିରାମ ହୋଇ ରହିଥାଅ । ସେମାନେ ଅରୂପର ରୂପ ଦର୍ଶନ କରି ଚର୍ମଚକ୍ଷୁ ପଖାଳୁଥାନ୍ତୁ । ଭଲରେ ଥାଅ ଠାକୁରେ । ଆମେ ବରଂ କିଛି ସୁଖ, କିଛି ଦୁଃଖର ଛାଇକୁ ନେଇ ଘାଣ୍ଟି ହେଉଥାଉ, ଜଞ୍ଜାଳଜର୍ଜର ହେଉଥାଉ । ତୁମେ ଭଲରେ ଥିଲେ ହେଲା । ଠାକୁର୍ ଭଲେ ବିରାଜୋ ଜୀ !

ଜାତି ଜାତି ଫୁଲର ଧଣ୍ଡାମାଳ ବାହୁରେ ଲାଗି କରାଇ କୃତକୃତ୍ୟ ହୋଇ ଆଡ ହୋଇଯାଅ ଭଗତେ ! କେରି କେରି ଦୟଣା, ସୋରି ସୋରି ତୁଳସୀ, ଥୋଲା ଥୋଲା ଚମ୍ପା ସାଙ୍ଗକୁ ଯୁଇ ଜାଇର ଦୋହରାମାଳ ମଣ୍ଡିଦିଅ । ବଉଳ ମାଳର ମୃଦୁଗନ୍ଧ ଅପୂର୍ବ । ବେଳ ଜାଣି ମଣ୍ଡନ କର । କିଆ, କେତକୀର ପାଖୁଡ଼ା ଶ୍ରୀମୁଖକୁ ବେଢ଼ି ସୂର୍ଯ୍ୟରଶ୍ମି ପରିଶୋଭା ପାଉ । ରୂପା ଗୋଟାଳି ମଲ୍ଲୀକଢର ଅଜସ୍ର ମାଳ ସେ ବିପୁଳ ଘନନୀଳ ବିସ୍ତାରରେ ଝୁଲାଇ ଦିଅ । ମହାସଙ୍କଟରେ ମଜ୍ଜମାନ ଗଜରାଜ ଟେକି ଦେଇଥିବା ଗୋଟିଏ ମାତ୍ର ପଦ୍ମଫୁଲ କୋଟିଏ ପ୍ରକାଶରେ ପ୍ରଭୁଙ୍କ ଶୋଭାବର୍ଦ୍ଧନ କରୁ । ଧାଡିଧାଡି ସପ୍ତମୁଖୀ ସୁବର୍ଣ୍ଣ ଦୀପରେ କର୍ପୂର ଆଳତି ପ୍ରଜ୍ୱଳିତ କର ! କସ୍ତୁରୀ ଚନ୍ଦନ ମୃଗମଦର ଚିତା ଲାଗି କରାଅ । ମହାକାଶରେ ଲକ୍ଷକୋଟି ସୂର୍ଯ୍ୟ ଯାହାର ଦୀପ, ବ୍ରହ୍ମା ଶଙ୍କର ଯାହାର ସ୍ତବ ପାଠ କରନ୍ତି, ଇନ୍ଦ୍ର ବରୁଣ ଯାହାର ବଟସ୍କର; ଅଣିମା ଲଘିମାଦି ଅଷ୍ଟୈଶ୍ୱର୍ଯ୍ୟର ଅଧିକାରୀଙ୍କୁ କିବା ଆରାଧନା କରି ପାରିବ, ସେବକେ ? ପ୍ରଣିପାତ ହୁଅ ! 'ନିରାଜନା ସ୍ୱୀକାର ହେଉ ପ୍ରଭୁ !' ବୋଲି ପ୍ରାର୍ଥନା କର ।

ତିନି ଧୂପ ପାଞ୍ଚ ଅବକାଶ ବେଳେ କେହି ସେବକେ ହେଳା ନ କରନ୍ତୁ ।

ଶ୍ରୀକ୍ଷେତ୍ରରେ ସେବା ଅଙ୍ଗୀକାର କରିଛନ୍ତି ବୋଲି ଶବରୀ- ବଦରି ଭ୍ରମରେ ଅପକୃଷ୍ଟ ନୈବେଦ୍ୟ ଅର୍ପିତ ନ ହେଉ । ସେଭଳି ବଦରି ପାଇଁ ଏବେ ମଧ ଏ କମ୍ବୁକଟକ ରାଜାଙ୍କ ଅଭିଳାଷ ରହିଛି ସତ, କିନ୍ତୁ ସେଭଳି ଶବରୀଟିଏ କାହିଁ ? ବଦରି ସର୍ବସ୍ୱା ସକାଶେ ବଦରି ହିଁ ଏକମାତ୍ର ସେବାମାଧ୍ୟମ । ଶ୍ରଦ୍ଧା ଭକ୍ତି ସମନ୍ୱିତ ହେଲେ, ବଦରି ଫଳଟିଏ ସୁଦ୍ଧା ବୈକୁଣ୍ଠବିଧାନରେ ଅମୃତ ମଣୋହି ତୁଲ୍ୟ ଦେବଭୋଗ୍ୟ । ଗଣ୍ଡିଏ ଦିବ୍ୟଅନ୍ନ ସେବା ଲାଗି କରାଅ, ଭଗତେ ! କୃଷ୍ଣଭୋଗ, ଗୋପାଳଭୋଗ, ପଦ୍ମକେଶରୀ, ମଣିଆଫୁଲ ଏ ଭୂମିରେ ଏବେ ସୁଦ୍ଧା ଫଳୁଛି । ରତ୍ନଥାଳିଆ ଅନ୍ନ ଯୋଗାଡିବାରେ କାର୍ପଣ୍ୟ କର ନାହିଁ । ପାରୁଛ ଯଦି, ପାଟଣାରୁ ବାଦଶାଭୋଗ ଚାଉଳ ବୁହାଇ ଆଣ । କାଶ୍ମୀରରୁ ମଗାଅ ପେସ୍ତା ବାଦାମ, ଦ୍ରାକ୍ଷା, କାବୁଲ୍‌ରୁ କଦଳୀ, କେରଳରୁ ନାରିକେଳ, ପଞ୍ଜାବରୁ ବୁଟଚଣା ! କୋରାପୁଟ କାନ୍ଦୁଲ, ସୋନପୁର ମୁଗ, ବରଗଡ଼ ବିରି ଏ ଭୂଖଣ୍ଡରେ ଏବେ ମଧ ଅତୁଳନୀୟ । ନାଡି ବଡି ଖିରି, ଖେଚେଡି, ଅମାଲୁ କାକରାଦି ସୁସଞ୍ଚ କରି ପ୍ରସ୍ତୁତ କର, ମହାସୁଆରେ !- ଲକ୍ଷ୍ମୀଙ୍କ ରାନ୍ଧଣା ବୋଲି ଚିହ୍ନା ପଡୁଥାଉ ତା'ର ରସ, ବର୍ଣ୍ଣ ଏବଂ ସୁଗନ୍ଧରେ ! ବିପୁଳ ସମ୍ଭାରରେ, ଯାଚି ଭୁଞ୍ଜେଇଲା ଭଳି ଅକୁଣ୍ଠିତ ଆଦରରେ ଯଶୋଦା- ଦୃଷ୍ଟିରେ ଅନ୍ନ ଠାଆ ଲାଗି କରାଅ ! ସ୍ନେହସାର ଘଟିତ ଅନ୍ନ ପାଇଁ ଖଡିଆଳରୁ ଖରମରା ଗୁଆଘିଅ ଅଣାଅ ! ଟାଙ୍ଗଡ଼ା ଦହି ମଗାଅ ମାଣିକ ପାଟଣାରୁ, କାଶୀପୁରରୁ । ମହେନ୍ଦ୍ରରୁ ମହୁ, ଗୋପରୁ ଦୁଧସର ଆସୁ । ନେପାଳ-କେଶର, କାଶୀମିଶ୍ରି, ବ୍ରହ୍ମପୁରୀ ସାଚି ନବାତ ଲାଗି କରାଅ ! ମାଥୁରୀ ଲଡୁ, ବୃନ୍ଦାବନୀ ଖୁଆ, ଶ୍ରଦ୍ଧାରେ ବାଢି ଦିଅ । ଶ୍ରୀଛାମୁରେ ଖୋଲି ଧର ସିନ୍ଦୁରୀ ପଣସ, ମଧୁ ଏବଂ ଦୁଧସର-ଘଟିତ ଆମ୍ବ ଦୋରୁଅର ଅମୃତଭାଣ୍ଡ ! ମଣୋହି ବେଳେ ଆଲଟ ଚାମର ସେବାକର । ଜାତିଫଳ ଚନ୍ଦନ ପାଣିରେ ଆଚମନ କରାଇ ତାମ୍ବୁଳ ସେବା କରାଅ । କରଯୋଡ ହୋଇ ଜଣାଅ, 'ତୁମରି ପ୍ରସାଦ ତୁମକୁ ଅର୍ପଣ କରି ଅପ୍ରାଧ ହେଲା ସିନା; ତୁମକୁ ଭୁଞ୍ଜାଇବାର ଲୌକିକତା ପାଇଁ ଚିର ଅପରାଧୀ କ୍ଷମା ମାଗୁଛି ଠାକୁର ।' ତୁମେ ହିଁ ତ' 'ଅତ୍ତା ଚରାଚର ଗ୍ରହଣାତ୍ ।' ପାଟି ମେଲା କଲେ ଗର୍ଭରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଲହଡି ମାରୁଥିବା ସାକ୍ଷ୍ୟ ପ୍ରମାଣ ମିଳିଛି । ତୁମ ଦାନ୍ତ ସଂଧାରେ ଦିଗ୍‌ବିଜୟୀ ବୀରପୁଙ୍ଗବମାନେ ଲାଖି ରହିଥିବା ବର୍ଣ୍ଣନା ପ୍ରତ୍ୟକ୍ଷ ଦ୍ରଷ୍ଟା ସ୍ୱୟଂ କରିଛନ୍ତି । ଉର୍ଣ୍ଣନାଭ ପରି ନିଜ ସୃଷ୍ଟିକୁ ନିଜେ ଗର୍ଭସାତ୍ କରିଯାଅ ବୋଲି ଶାସ୍ତ୍ର

କହୁଛନ୍ତି । ହେ, ଭକ୍ତ ଚିନ୍ତାମଣି ! ତଥାପି ବିଦୁର, ସୁଦାମାଙ୍କ ଅନ୍ନଗ୍ରହଣ କରି ସେମାନଙ୍କୁ କୃତାର୍ଥ କରିଛ ତ' । ଶବରୀ ବଦରିର ସମତୁଲ ହୋଇପାରିବ ନାହିଁ ଏ ଷାଠିଏ ପଉଟି ଭୋଗ ! ସର୍ବସ୍ୱ ଦେଇ ଦେବାର ଅଧିକାର କିମ୍ବା ସାମର୍ଥ୍ୟ ନାହିଁ ଏ ଅଧମର । କହିବାକୁ ବଳ ନାହିଁ, 'ସମର୍ପି ଦେଲି, ପାଇଲି ସର୍ବ' ! ତଥାପି ନୀଳାଚଳ ଧାମରେ ନୈବେଦ୍ୟ ଅଙ୍ଗୀକାର ହେଉଥାଉ ! ଧନ୍ୟ, ହେଉଥାନ୍ତୁ ସେବକ କୁଳ ଦେବାଧିଦେବଙ୍କୁ ଅନ୍ନ ଅର୍ପଣ କରି । ସ୍ୱୀକାର ହେଉଥାଉ ଲକ୍ଷ୍ମୀଙ୍କ ରାନ୍ଧଣା !

'ଅଜାୟମାନୋ ବହୁଧା ଭିଜାୟତେ ।' ଯେ ଅଜନ୍ମା ସେ ସହସ୍ରେ ରୂପରେ ପ୍ରକଟିତ ହୁଏ; ଭକ୍ତର ମନ ଜାଣି ବିଭାସିତ ହୁଏ । ନିର୍ଗୁଣ, ଅପରିମେୟ ବ୍ରହ୍ମ ସନାତନ କିଛି କିଛି ଗୁଣାଭାସ ନେଇ, କିଛି କିଛି ଇନ୍ଦ୍ରିୟାଭାସକୁ ସ୍ୱୀକାର କରି ନୀଳାଚଳ ଧାମରେ ବିଜେ ହୋଇଛନ୍ତି । ଯେ ଯେମିତି ଚାହିଁଲା ତାଙ୍କୁ ରୂପ ପ୍ରଦାନ କଲେ ସେ ତାହା ସ୍ୱୀକାର କରନ୍ତି । ମୟୂର ଚନ୍ଦ୍ରିକା ମଣ୍ଡି ହୋଇ ବାଙ୍କଚୂଳ ବେଶରେ ଠିଆ ହୋଇଗଲେ, ସବୁ ଦେହରେ କଦମ୍ବ ଫୁଟିଯାଏ, ହୃଦୟରେ ବୋହିଯାଏ ଯମୁନା ! ଆଶ୍ଚର୍ଯ୍ୟ ମୁହୂର୍ତ୍ତରେ ଅଜ୍ଞାତ ବନମାଳର ସୁଗନ୍ଧରେ ସୁରଭିତ ହୋଇଯାଏ ପୃଥିବୀ । ବଂଶୀ ସ୍ୱନରେ ନିନାଦିତ ହୁଏ ତାରା-ନକ୍ଷତ୍ରର ଆକାଶ । 'ଚନ୍ଦନ-ଚର୍ଚ୍ଚିତ-ନୀଳ-କଳେବର-ପୀତବସନ-ବନମାଳୀ' ବୈଷ୍ଣବ ଭକ୍ତମାନଙ୍କୁ କୃତାର୍ଥ କରି ଉଭା ହୋଇଯାନ୍ତି । ପାଦରେ ନୂପୁର ବାନ୍ଧି ଦିଅ, ଭଗତେ ! ବାସନ୍ତୀ ପାଟ ଲୋଟି ପଡୁ ପଦ୍ମପାଦ ଉପରକୁ । ମାଳତୀର ବିପୁଳ ମାଳ ଶ୍ରୀଭୁଜ ଏବଂ ବକ୍ଷ ଦେଶ ମଣ୍ଡନ କରୁ ! 'ଚନ୍ଦନ ଚିତା, ହୋ, କେଡ଼େ ଶୋଭିତା, ହୋ !'- ସୁସଜ୍ଜ ଦୀର୍ଘ ଚିତା କିଏ ସେ ଭାଲ ପଟରେ ଅଙ୍କନ କରିବ, ଭଗତେ, କିଏ ବାନ୍ଧିବ ବାଙ୍କଚୂଳ, ଗୁଞ୍ଜମାଳ ? -କିଏ ବାନ୍ଧିବ କଟି-ତଟରେ ପୀତବାସ ? ଗୋପିନୀ ଦୃଷ୍ଟିରେ ସିନା ଏ ଅପରୂପ ବିନ୍ୟାସ ଦିଶିବ ! ସେପରି ଅଧିକାର ଥିଲେ ସିନା ଅଙ୍ଗ-ମଣ୍ଡନ କରିବାର ଇନ୍ଦ୍ର ପଦ ମିଳିବ !

ପଦ୍ମବେଶରେ ଠାକୁରେ ଗଜ ଉଦ୍ଧାରଣ କରିବେ । କମଳବାସିନୀ କମଳାଙ୍କର କୃପାଭିକ୍ଷା ନ କଲେ ଲକ୍ଷେଭାର ପଦ୍ମରେ ରତ୍ନସିଂହାସନ ମଣ୍ଡଣି ହୋଇପାରିବ ନାହିଁ । ପାଦ ଠାରୁ ଶୀର୍ଷଯାଏଁ ବିକଚ-ରାଜୀବର ଶୋଭାଡମ୍ବର । ଗମ୍ଭୀରା ଭିତରେ ପଦ୍ମଗନ୍ଧ ଆମୋଦିତ ମଧୁଲୋଭୀ ଭ୍ରମରମାନଙ୍କର ଗୁଞ୍ଜନ । ସତର୍କ ଥାଅ, ଭଗତେ, ପଦ୍ମବ୍ୟୂହ

ଭିତରେ ପଦ୍ମମୁଖ ଲୁଚି ନ ଯାଉ । ଶ୍ୱେତ ପଦ୍ମଡୋଳା ଦିଶୁଥାଉ ଦାଉ ଦାଉ ଗରୁଡ ପୃଷ୍ଠ ପର୍ଯ୍ୟନ୍ତ । ହାତରେ ଶୋଭା ପାଉଥାଉ ସୁଦର୍ଶନ । ଆରତତ୍ରାଣ ରୂପରେ ପ୍ରଭୁ ଗଜରାଜର ଦୁଃଖ ମୋଚନ କରନ୍ତୁ । ଚକ୍ରଦାଢରେ ଗ୍ରାହ ନିପାତ ହେଉ । ବିଶ୍ୱାସ ପ୍ରତିଷ୍ଠିତ ହେଉ ଯେ ପଲକ-ପାତ ମାତ୍ରକେ 'ଛିଡ଼ିଗଲା ମଥା, ରହିଗଲା କଥା, ଡାକିଲା ମାତ୍ରକେ କରି ତ' !

ଝୁଲଣ, ଚନ୍ଦନରେ ପ୍ରଭୁ ଯଥାବିଧି ବିଜେ ହୁଅନ୍ତୁ । ଅୟୋଜନରେ ତ୍ରୁଟିକର ନାହିଁ ଭଗତେ, କାର୍ପଣ୍ୟ କର ନାହିଁ । ତା' ପାଖରେ ନିଜ ସାମର୍ଥ୍ୟରେ ପହଞ୍ଚିଯିବ ଏମନ୍ତ ଭଲା କିଏ ଅଛି ? ସେ କେବଳ ଅପେକ୍ଷା କରିଥାଏ ଭଗତକୁ- ସେ ତା'ର ସର୍ବସ୍ୱ ନିଃଶେଷ କରି ଅଜାଡି ଦେଲା ନା ନାହିଁ। ତେଣିକି ସେ ଦୁର୍ଲଙ୍ଘ୍ୟ ବ୍ୟବଧାନ ନିଜେ ଲଂଘି ଆସି ସେ ତାକୁ ଟୋଳି ନିଏ । ସର୍ବସ୍ୱ ନ ଦେବା ଯାଏଁ ସେ ସେପରି ଦୂରସ୍ଥ ଏବଂ ନିଷ୍କରୁଣ ଦିଶୁଥାଏ । ଝୁଲଣବାଡ ସଜାଅ ଭଗତେ, ପ୍ରଭୁ, ବିଜେ ହେବେ । ମାଣିକ୍ୟରେ ଖମ୍ବ, ବୈଦୁର୍ଯ୍ୟରେ ଝୁଲା ପ୍ରସ୍ତୁତ କର । ପାଟଡୋରର ତନ୍ତୁମାନଙ୍କରେ ଗୁନ୍ଥିଦିଅ ଗଜମୁକ୍ତା । କାଞ୍ଚନ-ମଣ୍ଡିତା ହୁଅନ୍ତୁ ନନ୍ଦରାଣୀ । ଯଶୋଦା ରୋହିଣୀ କୋଳରେ ରାମ ହରି ଶୋଭା ପାଇ ଅପୂର୍ବ ବାତ୍ସଲ୍ୟରସରେ ଟଳମଳ ହେଉ ପୃଥିବୀ ।

'କରୀନ୍ଦ୍ର-ଦନ୍ତ-ପଲଙ୍କ ତେଜି, ପ୍ରଭୁ ନରିନ୍ଦ୍ର ଚାପେ ଗମନ ।' ମଦନ ମୋହନ ଚାପକୁ ଯିବେ । ପ୍ରଚଣ୍ଡ ରୌଦ୍ର ତାପର ଉପଶମ ପାଇଁ ଉଶୀର, ଚନ୍ଦନ, କର୍ପୂର ଜାତିଫଳ ଜଳରେ ଛେରା ପହଁରା କର ବଡ଼ଦାଣ୍ଡ, ରାଧାମାଧବଙ୍କ ଗେଲବସର ଚାଲିରେ ପଲଙ୍କ ପାଲିଙ୍କି ଦୋହଲିଲା ବେଳେ ଜାତି ଜାତି ସୁବାସିତ ଫୁଲ ବର୍ଷା କର । ବିଜେ ଦାଣ୍ଡ ଆଦ୍ୟରୁ ପ୍ରାନ୍ତ ଯାଏ ଛାମୁଣ୍ଡିଆ ଟେକି ଛାୟା-ଶୀତଳ ରଖ । ନରେନ୍ଦ୍ର ଚାପରେ ଚାନ୍ଦୁଆ ମୁକ୍ତାଝୁମ୍ପା ଝୁଲାଅ । ଫୁଲରେ ବାଡ, ଫୁଲରେ ମଣ୍ଡପ ସଜାଅ । କବିସୂର୍ଯ୍ୟ, ଗୋପାଳକୃଷ୍ଣ, ବନମାଳୀଙ୍କ ଭଣତିରେ ନୃତ୍ୟ ଗୀତ ନିବେଦନ ହେଉ । ସ୍ୱତନ୍ତ୍ର ବେଳାରେ ବୋଲା ହେଉ ଗୀତ-ଗୋବିନ୍ଦ । ପଖାଉଜ, ଗିନି, ମୃଦଙ୍ଗ, ଝୁମୁକା, ମୃଦୁ ମଧୁର ତାଳ ମାନ ଲୟ ରକ୍ଷା କରନ୍ତୁ । ଚନ୍ଦନ ପୋଖରୀ ଚନ୍ଦନାୟିତ ହେଉ । ଗ୍ରୀଷ୍ମ-ନିଶା ସୁଗନ୍ଧ ଶୀତଳ ହେଉ । ଠାକୁରଙ୍କୁ ସେବା କରି ସ୍ୱୟଂ ସେବିତ ହୁଅ, ଭଗତେ । ମହାଭୌତିକ ପିଣ୍ଡ ତାପମୁକ୍ତ

ହେଉ ।

ଏହିପରି ବାରମାସେ ତେର ଯାତ୍ରା ଅନୁଷ୍ଠିତ ହେଉଥାଉ । ପହୁଡ ଭାଙ୍ଗିବା ଠାରୁ ପହୁଡ ପଡିବା ପର୍ଯ୍ୟନ୍ତ ନିତି ଖଟଣୀରେ କୁଣ୍ଠା କାର୍ପଣ୍ୟ ପ୍ରକାଶ ନ ପାଉ । ସିଂହାସନରେ ଆତ୍ମା ପୁରୁଷ ସାକ୍ଷୀ ସ୍ୱରୂପ ବସିଛି, ତାକୁ ଭଣ୍ଡିବା କଣ ସହଜ ପଡିଛି କି ? ଅଜ୍ଞାତରୁ ଉଦୟ ହୋଇ ଅଜ୍ଞାତରେ ଅସ୍ତ ହୋଇ ଯାଉଛି ଜୀବନ, ଭଗତେ, ସେଥିରେ ଏପରି ଠାକୁରଟିକୁ ଶ୍ରୀମନ୍ଦିରର ସପ୍ତାବରଣ ଭିତରେ ପ୍ରାଣ ଠାରୁ ପ୍ରିୟରୂପେ, ଅଙ୍ଗ ଲାଗି ସେବା କରିବା କ'ଣ ସାଧାରଣ ସାର୍ଥକତା କି ? ଜଣା ନାହିଁ, କେତେ ଜୀବନରୁ ସଞ୍ଚିତ କେତେ ସାଧନାର ସିଦ୍ଧି ରୂପେ ଏ ମହାର୍ଘ ଅଧିକାର ମିଳିଛି, ଭଗତେ, ତାକୁ ହେୟ ମଣ ନାହିଁ । ପୃଥିବୀର କେଉଁ ଏକ ଅରଣ୍ୟରେ, କେଉଁ ଇତର ପ୍ରାଣୀଟିଏ ହୋଇ ଜନ୍ମିଥିଲେ ଏ ଦର୍ଶନ ସ୍ୱପ୍ନରେ ସୁଦ୍ଧା ଅପହଂଚ ହୋଇଥାନ୍ତା । ଅହୋ ଭାଗ୍ୟ ମହୋଦଧିସେବିତ ଶଙ୍ଖକ୍ଷେତ୍ରରେ ଜନ୍ମ ଲଭିବା ମାତ୍ରେ ସିନ୍ଧୁନାଦରେ କର୍ଣ୍ଣ ପବିତ୍ର ହୋଇଛି । ପ୍ରଥମ ନିଃଶ୍ୱାସରେ ଛଡ଼ାମାଳର ଗନ୍ଧ ରକ୍ତ-ପ୍ରବାହକୁ ସୁରଭିତ କରିଛି । ଆଖିତୋଳି ଚାହିଁବା ମାତ୍ରେ ଆକାଶ ଚକ୍ର-ଚିରାଳ-ଲାଞ୍ଛିତ ଦିଶିଛି । ବଡ଼ଦାଣ୍ଡରେ ପ୍ରଥମ ପଦପାତ ବେଳେ ସେ ଅପର ବ୍ୟକ୍ତିଟି ହୁଏତ କେହି ଭକ୍ତ ମହାପୁରୁଷ; କାହିଁ କେଉଁ ଦୂରଦୂରାନ୍ତରୁ ଆସିଥିବା ତୃଷିତ ସାଧକ-ଆତ୍ମା । 'ବଡ଼ଦାଣ୍ଡ ଦେଖି ହେଲି ତୋଷ, ରେଣୁ ମାତ୍ର ତେଣୁ କଲି ଗ୍ରାସ !'....କୋଟି କୋଟି ଭକ୍ତଙ୍କର ବେଳାଭୂମି ଏ ସିଂହଦ୍ୱାର । ଏ ବାଇଶି ପାବଛ ସତେଇଶି ପୁରୁଷଙ୍କ ତୀର୍ଥଭୂମି । ଗରୁଡ଼ପୃଷ୍ଠରେ ଠିଆହୋଇ ପ୍ରଥମ ଦର୍ଶନରେ 'ଧନ୍ୟ ହୋଇଲି ଆଜ; ଧନ୍ୟ ମୋ ତାତ, ଧନ୍ୟ ମୋ ମାତ, ଦେଖିଲି ଦେବରାଜ ! ଧନ୍ୟରେ ନେତ୍ର ହେଲୁ ପବିତ୍ର ଚାହିଁ ଜଳଦ ତନୁ !'- ଆଉ କ'ଣ ଥାଏ ମାଗିବାକୁ ? ମାଗିବା କୃପଣର ଦୈନ୍ୟ, ଭଗତେ, ଅଯାଚିତ ପରିପୂର୍ଣ୍ଣ କରିଦେବା ଅହେତୁକୀ କୃପାର ଲକ୍ଷଣ । ଏତେ ଆର୍ତ୍ତଚିତ୍କାର, ଏତେ କୋଳାହଳର କିବା ପ୍ରୟୋଜନ ଅନ୍ତର୍ଯ୍ୟାମୀ ପାଖରେ ? - କି, ଛାର କଥାରେ କେଡ଼େ ବଡ଼ ପ୍ରଭୁଙ୍କୁ ଏତେ ଗଞ୍ଜଣା ଦେବାରେ କିବା ପ୍ରୟୋଜନ !

ପ୍ରଭୁଙ୍କ ବଡ଼ସିଂହାର ବେଳ ଗଡିଗଲାଣି ପରା । ବେଶକାରୀ ବେଶ କରିଦିଅ । ନୃତ୍ୟକାରୀ ନୃତ୍ୟକର ଶ୍ରୀଛାମୁରେ। ଠାକୁରାଣୀଙ୍କ ଉଆସରୁ ଛଡ଼ାମାଳ ଆଣି ପହୁଡପଲଙ୍କରେ ଲାଗି କରାଅ, ଭଗତେ, ଲୋକାଚାରରେ ଚିରଜାଗ୍ରତ ପୁରୁଷଙ୍କୁ

ପହୁଡ କରାଅ । ଘିଅଦୀପ ଜାଳିରଖ । ରଙ୍ଗମାଣ ପଇଡ ସାଜି ରଖ । ବିଡିଆ ପାନ ଭାଙ୍ଗି ରଖ । ନିଃଶବ୍ଦରେ ହୀରାକବାଟ ଆଉଜାଇ ଆଣ । ଅହୋରାତ୍ର ସେବାରେ ଗୋଟିଏ ତିଥି ସାର୍ଥକ ହେଲା । ଆଡ ହୋଇ ଯାଆନ୍ତୁ ମହାପାତ୍ରେ, ମେକାପେ, ଅଂଗଲାଗି ସେବକେ । ପ୍ରଭୁ ନିଶ୍ଚିନ୍ତ ବିରାଜନ୍ତୁ ଉନ୍ମଥିତ ସଂସାରର ସ୍ଥିର-କେନ୍ଦ୍ରରେ । ଠାକୁର ଭଲେ ବିରାଜୋ ଜୀ ! ଆମର କୌଣସି ଓଜର, ଆପତ୍ତି, ଆର୍ତି, ଅଭିଯୋଗ ନାହିଁ । ଆମେ ଶୂନ୍ୟ-ମନ୍ଦିର ନେଇ ଅପେକ୍ଷା କରିଛୁ ଠାକୁରେ । ଅନ୍ଧାର ଘର ଆଲୋକିତ କର । ଶ୍ରୀମନ୍ଦିର ହୋଇଯାଉ ଏ ପିଣ୍ଡ ! ହୃତ୍‌କେନ୍ଦ୍ର ହୋଇଯାଉ ରତ୍ନ ସିଂହାସନ । ନିଃଶ୍ୱାସ ବ୍ୟଜନ କରୁ। ଚକ୍ଷୁର ପଲକ ସେବାକରୁ ଆଲଟ ଚାମର । ଏ ପିଣ୍ଡମନ୍ଦିରର ତଟ ଦେଶରେ କାଳ ସିନ୍ଧୁ ଲହଡି ମାରୁଛି । ସୂର୍ଯ୍ୟ ଚନ୍ଦ୍ର ପ୍ରଦକ୍ଷିଣ କରୁଛନ୍ତି ପୂର୍ବରୁ ପଶ୍ଚିମକୁ । ଦଶଦିଗପାଳମାନେ ଆବୋରି ରହିଛନ୍ତି । ଇନ୍ଦ୍ରିୟ ଜଗତର ଘୋଷଯାତ୍ରା କରୁଛ ହେ, ଚୈତନ୍ୟପୁରୁଷ; ଏ ଅଧମର ଜୀବନ-ଯାତ୍ରା ହିଁ ଘୋଷଯାତ୍ରା । ଯାତ୍ରା-ବିମୂଢ଼ ମୁଁ ଅନୁଭବି ପାରୁନାହିଁ । ଯେଉଁଦିନ ଇନ୍ଦ୍ରିୟମାନେ ପରିତ୍ୟକ୍ତ ରଥ ପରି ନିଶ୍ଚଳ ହୋଇଯିବେ, ନିରନ୍ଧ୍ର ମେଘ-ମାଳାରେ ଆଷାଢ଼ ଆକାଶ ଆଛନ୍ନ ହୋଇ ଆସୁଥିବ, ବୁଜି ହୋଇ ଆସୁଥିବ ଜୀବନର ପ୍ରସ୍ଫୁଟିତ ପଦ୍ମ; ମୋ ଶ୍ରୀମନ୍ଦିର ଗମ୍ଭୀରା ଭିତରେ ଏପରି ଅଚଞ୍ଚଳ ପ୍ରଣବ ରୂପରେ ବିଜେ ହୁଅ ଜଗନ୍ନାଥ; ପରିପୂର୍ଣ୍ଣ ହେଉ ଘୋଷଯାତ୍ରା, ଶ୍ରୀମଣ୍ଡିତ ହେଉ ଶ୍ରୀମନ୍ଦିର !

□□□

ନ କାଙ୍କ୍ଷେ ସୁଖସୌଭାଗ୍ୟଂ ନ ଚ ବାରାଣସୀଗତିମ୍ ।
ଅଲଂଯଶଃ ଅଲଂକୀର୍ତ୍ତିଂ ଅଲଂ ଗୌରବମାଳିକାଂ ॥

ପ୍ରୟାଣକାଳେ ମନସା ତବସୌମ୍ୟରୂପମ୍ ।
ନାମାମୃତଂ ତୁ ଜିହ୍ୱାଗ୍ରେ ହୃଦି ପାଦପଦ୍ମମ୍ ॥
ଭିକ୍ଷାଂ ଦେହି ପ୍ରାର୍ଥୟାମି ତବ ଦ୍ୱାରଦେଶେ ।
ଦେହି କିଞ୍ଚିତ୍ ଭବଦୀୟ କୃପା କଟାକ୍ଷମ୍ ॥

୭

କ୍ଷଣକେ ଦାରୁ ତ' କ୍ଷଣକେ ବ୍ରହ୍ମ ଆଢୁଆଳରେ ଲୁଚିଯିବାର କୈତବ ସାମର୍ଥ୍ୟ ଧାରଣ କରି ତୁମେ ଯେ କେବେ·କାହାକୁ ସଂପୂର୍ଣ୍ଣ ଧରା ଦେଇଥିବ ଏ ବିଶ୍ୱାସ ଆମ୍ଭର ନାହିଁ । ଛଳିବା ତୁମ ଅଭ୍ୟାସ । ଅନ୍ଧପୁଟୁଳି ବାନ୍ଧି ଆମକୁ ଠିଆ କରି ଦେଇଛ । କିଏ ଅଜ୍ଞାନରେ ଅନ୍ଧ ତ' କିଏ ଜ୍ଞାନରେ । ସେଥିରେ ପୁଣି ଆମ ସାଙ୍ଗରେ ଏମିତି ଖେଳିବାର ଅର୍ଥ କ'ଣ ? ଘୋର ଅନ୍ଧକାର ଭିତରେ ତୁମେ ନାହଁ ବୋଲି ଆମେ ବୁଝି ଆସିଲାବେଳକୁ ଦୂରରୁ ବଂଶୀଧ୍ୱନି ଶୁଣାଯାଉଛି । କାହାର ବୋଲି ଭାବୁ ଭାବୁ ବିଜୁଳି ପରି ଚମକି ଯାଉଛି । ଆମେ ଅଗାଧ ବିଶ୍ୱାସରେ ବାହୁ ପ୍ରସାରି ଦେଉଛୁ । ଆଶ୍ଳେଷିଲା ବେଳକୁ ପବନରେ ମିଶି ଯାଉଛି । ଜହ୍ନ ପରି ପୁଣି ଉଙ୍କି ଆସୁଛି ! ହାତ ପାଉନାହିଁ । ନିଷ୍ପଲକ ଚାହିଁ ରହୁଛୁ । ଦେଖୁ ଦେଖୁ ଆମରି ବିଳାପ ଭିତରେ ତୁମେ ଅସ୍ତ ହୋଇଯାଉଛ । ଅଛ ବୋଲି ପ୍ରତ୍ୟୟ ଦେଉନାହଁ । ନାହିଁ ବୋଲି ନିଷ୍ପତ୍ତି ଦେଉନାହଁ । ତୁମର ଅନନ୍ତ ଛଳନା ଭିତରେ ତୁମକୁ ଖୋଜି ଖୋଜି ଆମର ଯୁଗ ବିତି ଗଲାଣି । ଏଠି ଆସି ପହଞ୍ଚିଲାବେଳକୁ ତୁମେ ଲୁଚି ଯାଉଛ, କେତେବେଳେ ଦାରୁରେ ତ' କେତେବେଳେ ବ୍ରହ୍ମରେ । ଆମେ ତୁମ ପାଖରେ ସହସ୍ର ବାର ଭଳି ଯାଉଛୁ । ତୁମ କପଟ ଭେଦି ପାରି ନାହୁଁ ।

ତୁମେ ଜଗନ୍ନାଥ ବୋଲାଇ ସମସ୍ତଙ୍କୁ ସ୍ୱୀକାରି ନେଇଛ । ସମସ୍ତଙ୍କୁ ନିଜର କରିଛ ନିଜେ କାହାରି ହୋଇନାହଁ । କାଳେ କିଏ ତୁମକୁ ଆସି ଅଧିକାର କରିଯିବ ଏଇ ଭୟରେ କ'ଣ ଏମିତି ଛଦ୍ମ କରିଛ କି ? ଏମିତି ଆମଭଳି ଗଉଡ଼ ବାଉଡଙ୍କ ହାବୁଡ଼େ ପଡିଗଲେ କାଳେ ସେମାନେ କିଛି ମାନିବେ ନାହିଁ, ଶୂନ୍ୟେ ଶୂନ୍ୟେ ଟେକି ନେବେ, ଏଇ ଆଶଙ୍କାରେ ହୁଏତ' ଏତେ ଆୟୋଜନ କରିଛ । ଚାରିଦିନକୁ କଣ୍ଟ କରିଥିଲ । କାଳେ ଆମେ ଆସିଯିବୁ ବୋଲି ନିଶିଦିନ ଚାହିଁ ରହିଛ । ନିଷ୍ପଲକ

ଚାହିଁବାରେ ପତା ଯୋଡିକ କେଉଁଠି ଲୀନ ହୋଇଗଲାଣି । ପଦ୍ମ ପଳାଶ ପରି ଆଖି ଚକା ଧରି ଗଲାଣି । ବଇଁଶୀ ଧରିଲେ ଚିହ୍ନା ପଡିଯିବ ବୋଲି ପ୍ରସ୍ତ ପ୍ରସ୍ତ ପାଟକନା ଗୁଡ଼େଇ ଥୋଇ ଦେଇଛ । ଏଠା ଲୋକେ ଜାଣି ଆମଠୁ ଆହୁରି ଅଧମ । ନ ହେଲେ କି ସେ ଖମ୍ବଭଳି ପଦାର୍ଥଟିକୁ ଚକ୍ର ବୋଲି ମାନି ଯାଇଥାନ୍ତେ ? କାଳେ କିଏ ବନମାଳା ପିନ୍ଧେଇ ଦେବେ ବୋଲି ଗଳାକୁ ଗୋପ୍ୟାନ କରି ଦେଇଛ । ଦାଣ୍ଡରେ ଚଲେଇ ଚଲେଇ ନେବେ ବୋଲି ଗୋଡ଼ ଯୋଡ଼ିକୁ ଉଦର ଭିତରେ ଲୀନ କରି ଦେଇଛ । ହାତ ଯୋଡ଼ିକୁ ସାଙ୍କୋଡି ନେଇଛ ! ତୁମେ ସତେ କାହିଁକି ଏତେ ଡରି ଯାଇଛ ଆମକୁ ? ଆମେ କ'ଣ ଏତିକି ଅଗୁଁଆର ହେଇଛୁ ଯେ ପୁରୁଣା କଥାକୁ ଅଡି ବସିବୁ ? ଆମ ପାଖରେ ତୁମେ ମିଛ କହିବା କୋଉ ନୂଆ କଥା ? ତୁମେ ଆମକୁ ମିଛ ନ କହିଲେ ଭଲା ଆଉ କାହାକୁ କହିବ ? କଂସକୁ ନା ଇନ୍ଦ୍ରକୁ ? ତୁମେ ଆମକୁ ମିଛ କହ ବୋଲି ତ' ଆମେ ତୁମର ପ୍ରିୟଜନ ବୋଲି ଗର୍ବ କରୁ । ଅଭିମାନ ଛାଡ ବନ୍ଧୁ, ସହସ୍ର ପ୍ରିୟଜନଙ୍କ ଆଗ୍ରହ ଅନୁରୋଧକୁ ଘେନା କର । ଆସ, ଅପାର କାଳ ଅନ୍ତେ ଥରେ ଗୋପକୁ ଯିବା ।

XXX ଦ୍ୱାରକା ତ' ଏଠୁ ଅନେକ ବୁଲାଣି ବାଟ । ତଥାପି ତୁମ ମନ ଭାଙ୍ଗିବାକୁ ଆମର ଇଚ୍ଛା ନାହିଁ । ତୁମେ ସିନା ଆମ ମନ କଥା ଜାଣି ସୁଦ୍ଧା ଖାତିର କରନାହିଁ । ଆମର ଯେତିକି ଉଦ୍‌ବେଗ ତୁମକୁ ପହଞ୍ଚେଇବା ପାଇଁ ତୁମେ ସେତିକି ବିଳମ୍ବ କରି ଆମକୁ ସନ୍ତାପିଲେ ତୁମର ତୃପ୍ତି । ତୁମ ସାଙ୍ଗେ ପ୍ରୀତି ପାଳିବା ଭାରି କଷ୍ଟ ସତେ ! ଦେହ ଲୁହାରେ, ଛାତି ପଥରରେ ବାନ୍ଧିଲେ ସୁଦ୍ଧା ତରଳି ବୋହିଯିବ । ଆମେ ସବୁ କେମିତି ଅଛୁ କେଜାଣି !

...ହେଇ ଯେ ଜଳାର୍ଣ୍ଣବ ଦେଖାଯାଉଛି, ସେଇ ତ' ତୁମ ଦ୍ୱାରକା । ତୁମେ ସେଇଠି ରାଜୁତି କଲାବେଳେ ଯାହାକୁ ତୁମ ନିଜ ତେଜରେ ଅବରୋଧି ରଖିଥିଲ, ସେ ତୁମ ପଛେ ପଛେ ମାଡିଆସିଲା । ସମୁଦ୍ର ମାଡି ଆସିଲା । ଜଳେ ଦ୍ୱାରକା ନାଶଗଲା । ତୁମେ କ'ଣ ଯେଉଁଠି ଅଧିକାର କର ସେଇଠି ସବୁବେଳେ ଏମିତି ପ୍ରଳୟ ମଡ଼େଇ ଦେଇ ଚାଲିଯାଅ ? ତୁମେ କ'ଣ ଜାଣିଥାଅ ତୁମ ପଛରେ ପ୍ରଳୟ ଲାଗି ରହିଛି ବୋଲି ? ତା' ହେଲେ ତୁମକୁ ଆଶ୍ରାକରି ଯେଉଁମାନେ ବେଢି ରହିଥାନ୍ତି ସେମାନେ ଭାସିଗଲାବେଳେ ତୁମେ କ'ଣ ନିର୍ବିକାର ଚାହିଁ ରହିଥାଅ ? କିନ୍ତୁ ସମଗ୍ର ଦ୍ୱାରକାକୁ

ଗ୍ରାସିଗଲା ପରେ ଯେତେବେଳେ ସମୁଦ୍ର ତୁମ ନିବାସ ଆଡକୁ ମାଡି ଆସିଲା ତୁମେ କେମିତି ତାକୁ ବାରଣ କରି ଦେଇପାରିଲ ? ସମସ୍ତଙ୍କ ସାଙ୍ଗରେ ସେ ନିବାସ ଖଣ୍ଡକ ମଧ ମହାକାଳକୁ ଅର୍ପି ଦେଇଥିଲେ ତୁମ ଅଖଣ୍ଡ ଐଶ୍ୱର୍ଯ୍ୟରେ କ'ଣ ଅବା ଉଣା ହୋଇଯାଇଥାନ୍ତା ? ଏବେ ତୁମେ ନିଜେ ଖସିଗଲ; ନିଜ ନିବାସକୁ ବଞ୍ଚେଇ ନେଲ ଅଥଚ ବାକି ସମସ୍ତଙ୍କୁ ସମୁଦ୍ରକୁ ପେଲି ଦେଲ ବୋଲି ଅପଖ୍ୟାତି ରଟିଗଲା । ଇଚ୍ଛା ହେଉଛି ଆମେ ମରିଯାନ୍ତୁ ପଛେ ତୁମ ନିନ୍ଦା ଶୁଣନ୍ତୁ ନାହିଁ !- ଖାଲି କ'ଣ ସେତିକି ?

...ହେଇ ସମୁଦ୍ର ଧାରେ ଧାରେ କଳା ବିଷ ରଙ୍ଗର ଏରକା ବଣ ଏବେ ବି ଦିଶୁଛି । ଛୁରୀ ଭଳି ତୀକ୍ଷ୍ଣ ପତ୍ର ଗହଳରୁ ଏବେ ବି ଝଣତ୍କାର ଶୁଭୁଛି । କେମିତି ସତେ ତୁମ ମନ ହେଲା ଏଡ଼େ ବଡ଼ ବଟଗଛ ପରି ବିଶାଳ ଯଦୁବଂଶଟିକୁ ନାରଖାର କରିଦେବା ପାଇଁ ? କି ଦୋଷ କରିଥିଲେ ଶାମ୍ବ, ଅନିରୁଦ୍ଧ ଆଉ ପ୍ରଦ୍ୟୁମ୍ନ ? କେମିତି ତୁମ ହାତ ଗଲା କନ୍ଦର୍ପ ପରି ସୁନ୍ଦର ସେ ପୁଅଟିର ମୁଣ୍ଡ ହାଣି ଦେବାପାଇଁ ? ଆମକୁ ସନ୍ତାପିତ କରୁଥିଲ ବୋଲି ଆମେ ତୁମକୁ ନିଷ୍ଠୁର କହୁଥିଲୁ । କିନ୍ତୁ ତୁମ ଭିତରେ ଏପରି ନିର୍ମମ ଘାତକ ଲୁଚିଥିଲା ବୋଲି ତ' ଆମକୁ ଜଣା ନଥିଲା । ଶ୍ରୀକ୍ଷେତ୍ରର ଗମ୍ଭୀରା ଭିତରୁ ଚାହିଁଥିବା ସେ ରାଉ ରାଉ ଆଖିକୁ ଅନେଇଲେ ବେଳେବେଳେ କ'ଣ ସେଥିପାଇଁ ଡର ମାଡେ କି ?

....ଛାଡ, ଚାଲ ଯିବା ଏଇଠୁ । ଦ୍ୱାରକାର ଏ କାଳ ସମୁଦ୍ର ସମ୍ଭାଳିବା ପାଇଁ ଆମର ବଳ ନାହିଁ, ବନ୍ଧୁ, ତୁମକୁ ମଧ୍ୟ ସେ ରୂପରେ ସମ୍ଭାଳିବାକୁ ବଳ ନାହିଁ । ଅଷ୍ଟପାଟରାଣୀଙ୍କର ଏ ଐଶ୍ୱର୍ଯ୍ୟମୟ ଦ୍ୱାରକା, ଭୋଗଭୂମି ଦ୍ୱାରକା ଆମର ଅନୁକୂଳ ନୁହେଁ । ଜାରା ଶବରର ଦ୍ୱାରକା, ବଜ୍ରପାତର ଦ୍ୱାରକା ଆମର ସହନୀୟ ନୁହେଁ । - ଚାଲ,ଯିବା ଏଇଠୁ !

**XXX** ତୁମେ କ'ଣ ହସ୍ତିନାକୁ ଏବେବି ଏତେ ଭଲପାଅ ? ପାଣ୍ଡବଙ୍କୁ ସଖାବୋଲି ସ୍ୱୀକାରି ନେଲାପରେ ତାଙ୍କ ପାଇଁ କ'ଣ ନ କରିଛ ତୁମେ ? ପାଣ୍ଡବମାନେ ରାଜପୁତ୍ର । ଏକେ ଏକେ ବାହୁବଳରେ ରାଜଚକ୍ରବର୍ତ୍ତୀ ହେବାକୁ ସମର୍ଥ । ତୁମେ ତାଙ୍କୁ ଟୋଳି ନେଲ କରାଳ ନଈର ଆର ପାରିକୁ । ତମେ କ'ଣ ସଖାପଣ ଆଗରୁ କରିନାହିଁ ? ଏଥର କିନ୍ତୁ ପାଣ୍ଡବଙ୍କ ପାଇଁ ପ୍ରାଣପଣ କରିଦେଲ । ହେଲେ, ପାଣ୍ଡବେ ତ' ତମ ପାଇଁ ତିଳାର୍ଦ୍ଧେ ଘୁଞ୍ଚି ନାହାନ୍ତି । ରଜାପୁଅର ମୁରାଟ, ଅନ୍ୟକୁ ବିନିଯୋଗ

କରିବାର ତାଙ୍କ ଅଧିକାରକୁ ତୁମେ କେଡ଼େ ସହଜରେ ମାନି ଯାଇଛ ! ତାଙ୍କ ପାଇଁ ଦୂତ, ତାଙ୍କ ପାଇଁ ସଇସ, ତାଙ୍କ ପାଇଁ ସାରଥୀ ହୋଇ ବସିବାରେ ତୁମ ଶ୍ରେଷ୍ଠପଣ, ଜ୍ୟେଷ୍ଠପଣ କେଉଁଠି ଥୋଇ ଦେଲ ? କିନ୍ତୁ ଆମ ପାଇଁ ତୁମ ଶ୍ରୀଅଙ୍ଗରେ ଶ୍ରମଝାଳ ଦିଶିଗଲେ ଆମ ବୁକୁ ଫାଟିଯାଏ । ଗୋପାଳ ପୋଏ ତୁମକୁ କାନ୍ଧରେ ବସାଇ ଜଗତ ଭ୍ରମି ଯାଇଥାନ୍ତେ । ଏପରି ଅନୁଗତ ସହଚର କ'ଣ ସଖା ନୁହନ୍ତି ? ତାଙ୍କୁ ଅବହେଳା କଲେ ସେମାନେ ଜାଣି ପାରନ୍ତି ନାହିଁ ବୋଲି, ତୁମେ ତାଙ୍କୁ ଛାଡିଗଲାବେଳେ ତୁମ ହସ ହସ ମୁହଁକୁ ଚାହିଁ ତୁମ କପଟକୁ ସନ୍ଦେହ କରି ପାରନ୍ତି ନାହିଁ ବୋଲି, ସେମାନେ ଧନୁର୍ଧାରୀ ରାଜପୁତ୍ର ନୁହନ୍ତି ବୋଲି, ତେଜ ଐଶ୍ୱର୍ଯ୍ୟରେ ତୁମ ସମକକ୍ଷ ନୁହନ୍ତି ବୋଲି ତୁମେ ତାଙ୍କୁ ଉପେକ୍ଷା କରିଗଲ କି ? ଗଜପତିର ଭୋଗ ଭାଗ୍ୟ, ଛତିଶା ନିଯୋଗ ଛପନ ପଉଟି ଭୋଗକୁ ଗୋପାଳେ ସମର୍ଥ ନୁହନ୍ତି ସତ, ହେଲେ ସର୍ବସ୍ୱ ନିଗାଡି ଦେଇ ଦେବାରେ ତାଙ୍କର ଦ୍ୱିଧା କାର୍ପଣ୍ୟ କେବେ ଦେଖିଛ କି ? ହଉ ହେଲା, ତୁମର ଯେତେବେଳେ ଯାହାକୁ ମନ ହେଲା ସେଥିରେ ଓଜର ଆପତ୍ତି କରିବାକୁ ଆମେ କିଏ ? ତୁମର ସାର୍ବଭୌମ ଅଧିକାର ଦେଇ ମୁଣ୍ଡରେ ବସେଇଲା ପରେ ତୁମେ ଯାହା କଲେ ସୁଦ୍ଧା ଆମକୁ ସୁନ୍ଦର ।

ତୁମେ ଅନେକ ଦିବ୍ୟ ଅଦିବ୍ୟ କର୍ମ କରୁଥିବାବେଳେ, ତୁମକୁ କିଏ କ'ଣ ରୂପେ ଦେଖିଛି, ବୁଝିଛି। କିଏ କଣ ପାଇଛି, ଦେଇଛି । ଆମେ ଖାଲି ମୁଗ୍ଧ ବିମୂଢ଼ ହୋଇ ଅନେଇଥିବା କଥା । ଯମୁନା ନଈର ବାଲିପଠା ଉପରେ ଆମକୁ ଦୁଇ ଦଳ କରି ଲଢ଼େଇ ଦେଉଥିଲ । ନିଜେ ଲଢୁଥିଲ । ଆମେ ଖେଳରେ ଖେଳରେ ମରାମରି ହେଉଥିଲୁ । ଖେଳ ଉତ୍ତାରୁ ଆମେ ହସୁଥିଲୁ; ତୁମେ ହସୁଥିଲ । ଏଇଠି ସେଇ ଅଭ୍ୟାସରେ ଦୁଇପକ୍ଷକୁ ଲଢ଼େଇ ଦେଲ । ତୁମୁଳ ଶଙ୍ଖ ଶବ୍ଦ ହେଲା । ଭୀଷ୍ମ ପରି ଭୀମରୂପୀ ଯୋଦ୍ଧାମାନେ ସିଂହନାଦ କଲେ । ହସ୍ତୀଙ୍କ ବୃହଂଣ, ଅଶ୍ୱଙ୍କ ହ୍ରେଷା ଭିତରେ ନେମିଘୋଷ ମିଶିଗଲା । ହୁଙ୍କାର, ହାହାକାର ମିଶିଗଲା । ଆକାଶ ଆଚ୍ଛନ୍ନ ହେଲା ଶରଜାଲରେ । ପୃଥିବୀ ପ୍ଲାବିତ ହେଲା ରକ୍ତରେ । ଦିନ ଦିନ ଧରି ଅଠର ଦିନ ଏଠି ଜଳିଲା ହୁତାଶନ । ତୁମେ ହିଁ ପ୍ରଥମେ ଅଗ୍ନିସଂଯୋଗ କରିଥିଲ । ତୁମେ ହିଁ ରଥରଜ୍ଜୁ ଧରି ସେ ମନ୍ଥନର ମଝିରେ ନିରସ୍ତ୍ର ରହି ଅସ୍ତ୍ରଧାରୀମାନଙ୍କୁ ବିଘୂର୍ଣ୍ଣିତ କରୁଥିଲ; ଚୂର୍ଣ୍ଣିଭୂତ କରୁଥିଲ । ଖେଳ ସରିଲା ବେଳକୁ କୁଢ଼ କୁଢ଼ କବନ୍ଧ ଭିତରେ

ପାଞ୍ଚଟି ରାଜପୁତ୍ର ବାଟ ବାରି ନୀରବ ଚାଲିଗଲେ । ତୁମେ ହିଁ ଏ ଖେଳ ଶେଷରେ ରହିଗଲ ହସିବାପାଇଁ। ବାକି ସମସ୍ତେ ତ' ମୃତାହାତ ! କାହିଁକି ଏପରି କଲ, ବନ୍ଧୁ ? ଦ୍ୱାରକାରେ ଯଦୁବଂଶ ପରି କୁରୁକ୍ଷେତ୍ରରେ ସୋମବଂଶଟିକୁ ନିପାତ କରିଦେଲ ! ତୁମର ସେ ଧର୍ମ ଯୁଦ୍ଧରେ ଧର୍ମ ନିଜେ ଯୁଦ୍ଧ କରୁଥିଲେ, ନା ଅପେକ୍ଷା କରୁଥିଲେ ତୁମ ଆଡୁଆଳରେ, ସମୁଦ୍ର ପରି ?- ଯୁଦ୍ଧ ସରିଗଲେ ମାଡି ଆସି ଅଧିକାର କରିବେ, ସ୍ୱୟଂ ସ୍ଥାପିତ ହେବେ ବୋଲି ?

ତୁମେ ଭାରି ବିଚିତ୍ର ଖେଳୁଆଡ ବନ୍ଧୁ ! ତୁମ ମାରଣ, ତାରଣ ବାରିବା ଦୁଷ୍କର । ପାଣ୍ଡବେ ତୁମ ପଞ୍ଚପ୍ରାଣ ପରା ! କ'ଣ କଲ ତାଙ୍କୁ ? ଜୀବନ ସାରା ବନବାସ କଷ୍ଟ, ଅନ୍ନବସ୍ତ୍ର କଷ୍ଟ ଦେଇ ଅପମାନିତ କଲ। ଧନୁର୍ହୁଳରେ ଟେକି ଧରିବାର ଯୋଦ୍ଧାପଣ ଯେଉଁ ରାଜପୁରୁଷର, ଯେ ଚାହିଁଲେ ମୁହୂର୍ତ୍ତକେ ଧନକୁ ଜୟ କରି କୁବେର ସଂପତ୍ତି ଅଜାଡି ଦେଇପାରେ ତାକୁ ନେଇ ଅନ୍ତଃପୁରରେ ବୃହନ୍ନଳା କରି ରଖେଇଲ ? ସାମର୍ଥ୍ୟର ଅପଚୟ କରେଇଲ ? ସାମର୍ଥ୍ୟର ନିନ୍ଦା ହେଲେ ପରା ମରଣଠୁ ବଳି ଦୁଃଖ ହୁଏ ! କାହିଁକି ସେ ଆଶ୍ରିତ ମଣିଷକୁ ନେଇ କଣ୍ଢେଇ ଭଳି ନଚେଇଲ ? ନାକ ଘୋଷାରିଲ ? କାହିଁକି ରାଜସଭାରେ ଯାଜ୍ଞସେନୀର ତେଡେ ବଡ଼ ଅପମାନ କରେଇଲ ?- ତା' ପୁଣି ଭୀମାର୍ଜୁନ ପରି ସମର୍ଥ ପତିମାନଙ୍କ ଆଗରେ ?- ଓଃ, ନାରୀଟିଏ ବଳାତ୍କାର ବିବସ୍ତ୍ରା ହେବାପର୍ଯ୍ୟନ୍ତ କାହିଁକି କଥା ଗଲା ! ତୁମକୁ ସତେ ଆଶ୍ରିତ ହେବା ଯାହା ଅଗ୍ନିକୁ କୋଳ କରିବା ତାହା । ତୁମେ ଜାଳିଦିଅ, ପୋଡି ଦିଅ, ନାରଖାର କରିଦିଅ । ସବୁ ଦୁର୍ବିସହ ଯାତନା ତୁମେ ନାରୀ ଉପରେ ହିଁ ଅଜାଡି ଦିଅ କାହିଁକି ? ଦ୍ରୁପଦ ରାଜକନ୍ୟା ତୁମର ଖୁବ୍ ପ୍ରିୟଜନ ପରା ! ତାକୁ ହିଁ ବାଛିଲ ବାରମ୍ବାର ଲାଞ୍ଛିତ ହେବାକୁ, ଦୁଃଶାସନ ହାତରେ, କୀଚକ ହାତରେ ! ତାକୁ ହିଁ ବାଛିଲ ଏକାଥରେ ପାଞ୍ଚଟିଯାକ ପୁଅର କଟା ମୁଣ୍ଡ ଦେଖିବାକୁ ! ତାକୁ ହିଁ ବାଛିଲ ସବୁ ହାରି ସାରି ଟଳମଳ ଗୋଡ଼ରେ ମୃତ୍ୟୁର ପାହାଡ଼ ଚଢିଲା ବେଳେ ପ୍ରଥମେ ଝୁଣ୍ଟି ପଡିବାକୁ !!- ସୁଭଦ୍ରା ତୁମ ଭଉଣୀ ପରା ! ତାକୁ କେମିତି ଏଡ଼େ ବଡ଼ ପୁତ୍ର କଷ୍ଟ ଦେଇପାରିଲ ? ତା ପୁଣି ଅଭିମନ୍ୟୁ ଭଳି ପୁଅ ! ତୁମେ ଏଡ଼େ ନିର୍ମମ ହତ୍ୟା କରିପାର ? ଅଭିମନ୍ୟୁର କ'ଣ ଦୋଷ କହିଲ ? ତାକୁ କ'ଣ କୌଣସି କାରଣରୁ ସହିପାରିଲ ନାହିଁ, ଦୁର୍ବାର ମଣିଲ ତାର ଶୌର୍ଯ୍ୟ ପାଇଁ ? ଅର୍ଜୁନର ପୁଅ

ବାସୁଦେବଙ୍କ ଭଣଜା ସେମିତି ନ ହୋଇ ଆଉ କେମିତି ହୋଇଥାନ୍ତା ? ସେଥିପାଇଁ କ'ଣ ଜାଣି ଶୁଣି ତାକୁ ଶତ୍ରୁ ଘେରରେ ପକାଇ ଏମିତି ମରାଯାଏ? - ସେହିଭଳି କାରଣରୁ କ'ଣ ବେଲାଳସେନର ମୁଣ୍ଡ ହାଣି ଜୟସ୍ତମ୍ଭ ଉପରେ ଥୋଇଦେଲ ? - କି ବିଚିତ୍ର ତୁମ ଢଙ୍ଗ ! ସବୁଠି କ'ଣ ଆପଣା ଲୋକଙ୍କୁ ମାରିବା, ମରେଇବା ତୁମ ନୀତି ? ନିଜ ଅବୟବକୁ ହାଣି ଦେଲାପରି ଆତ୍ମଘାତୀ ହେଲା ସୋମବଂଶ । ତୁମେ ହିଁ ସେମାନଙ୍କୁ ବାଧ୍ୟ କରିଥିଲ ନିଜ ନିଜର ରକ୍ତପାତ କରିବାକୁ । କେବଳ ଅର୍ଜୁନ ନୁହେଁ, ପ୍ରତ୍ୟେକ ଯୋଦ୍ଧା ଭିତରେ ଅର୍ଜୁନଟିଏ ଅମଙ୍ଗ ହେଉଥିଲା ଧନୁ ଟେକିବାକୁ । ଆଗରେ ସ୍ୱଜନ କୁଟୁମ୍ବୀଙ୍କୁ ଦେଖି ତାର ସ୍ନାୟୁ ମଣ୍ଡଳ ଦୁର୍ବଳ ହୋଇଯାଇଥିଲା । ଅପରକୁ ଦେଖି ପାରିଲେ ସିନା ସେ ଲଢ଼ିଥାନ୍ତା । କେମିତି ରକ୍ତରେ ବାଡ ପକେଇ ସେ ଆତ୍ମୀୟ ଗୁଡ଼ାଙ୍କୁ ସଂହାର କରିଦେଇ ପାରିବ ?- ସେ କ'ଣ ତୁମ ଭଳି ହେଇଚିକି ? ସେ ପରା ମଣିଷଟିଏ ! ତୁମେ କିନ୍ତୁ କଣ ଛାଡିଲ କି ? ତାର ସେ ଅନିଚ୍ଛାକୁ ଅନେକ ଉପଚାର କରି ଖସେଇ ଦେଲ ! ସେଇ ପୁରୁଣା କଥା- ପୁଣି ନାରୀଟିକୁ ତା ଅନିଚ୍ଛାରେ ବିବସ୍ତ୍ରା କଲା ପରି ! ତୁମେ ସେଇ ଚୀରଚୋରା ରହିଗଲ ଚିରକାଳ ବନ୍ଧୁ ! ନଗ୍ନ ରୂପ ଏକ ଅସହାୟ ରୂପ ! ତାକୁ ଦେଖିବାକୁ ତୁମର ଏତେ ସରାଗ କାହିଁକି କହିଲ ? ନଗ୍ନତା କ'ଣ ସତ୍ୟ ?

ଅର୍ଜୁନଟିକୁ ନାନା ପ୍ରକାରେ ବୁଝେଇଲ; ତାକୁ ବିହ୍ୱଳ, ବିମୂଢ଼ କଲ ତୁମ ଢଙ୍ଗରେ ! ବାଘମୁହଁ ଖଞ୍ଜି ଆମକୁ ଡରାଉ ଥିଲ । ପାଟି ମେଲେଇ ମା ବିଚାରିଟିକୁ ବିମୂଢ଼ କରିଥିଲ । ସେଇ ବିଦ୍ୟା ପ୍ରୟୋଗ କରି ଅର୍ଜୁନଟିକୁ କାବୁ କରିଦେଲ ! ସ୍ୱର୍ଗ-ମର୍ତ୍ତ୍ୟପାତାଳ ଗତାଗତ ବର୍ତ୍ତମାନକୁ ହାର କରି ପିନ୍ଧିଲ । ପାଟି ବିସ୍ତାର କରି ଦାନ୍ତ ସଂଧାରେ ଲାଖିଥିବା ଯୋଦ୍ଧାମାନଙ୍କୁ ଦେଖାଇଲ । ସେମାନେ ମରି ସାରିଥିଲେ । ଅର୍ଜୁନ ଅମଙ୍ଗ ହୋଇଥିଲେ ସୁଦ୍ଧା ସେମାନଙ୍କର ପ୍ରାଣ ନଥିଲା । ଅର୍ଜୁନ ତୁମ ମୁହଁକୁ ଚାହିଁଦେଲା । ସେ ମୁହଁକୁ ଚାହିଁଲେ ଯାହା ହୁଏ ତାହା ହେଲା । ସେ ନିର୍ବିଚାର ସଂହାର କରିଗଲା ଭାଇ, ବନ୍ଧୁ, କୁଟୁମ୍ବୀ, ଗୁରୁ, ପରିଜନ ସମସ୍ତଙ୍କୁ, ଧର୍ମ ପାଇଁ ତୁମ ଆଗରେ ତୁମକୁ ସାକ୍ଷୀ ରଖି !

ପାଣ୍ଡବେ ବଞ୍ଚିଲେ, ଯେମିତ ଧୃତରାଷ୍ଟ୍ର ଗାନ୍ଧାରୀ ବିଦୁର ମଧ ବଞ୍ଚିଲେ । ସାର ଶୂନ୍ୟ ଖୋଳପା ଗୁଡ଼ିଏ !- କାହାକୁ ନେଇ ବଞ୍ଚିବେ ? -ପୃଥିବୀକୁ; ଯେ କାହାରି

ନୁହେଁ ? ଏ ଆକାଶକୁ, ଯାହା ସହିତ ସଂପର୍କ ଯୋଡି ହୁଏ ନାହିଁ । -ତୁମକୁ; ଯେ ଯୁଦ୍ଧ ସରୁ ସରୁ ତାଙ୍କୁ ସେ ରକ୍ତ-କର୍ଦ୍ଦମରେ ଛାଡିଦେଇ ଦ୍ୱାରକା ଫେରିଗଲ ? ତୁମେ ଭାରି ପ୍ରତାରିତ କରିପାର, ବିସ୍ମିତ, ବିଡମ୍ବିତ କରିଦେଇ ପାର। ଆମ ପାଇଁ ଏଇଟା' କିଛି ନୂଆ କଥା ନୁହେଁ । ତୁମର ସେ କୈତବ ଆଚରଣ ଆମେ ବହୁକାଳୁ ଜାଣିଛୁ । ତୁମ ସ୍ୱଜନ-ନିଧନ ନୀତି ମଧ୍ୟ ଖୁବ୍ ପୁରୁଣା । ତୁମେ ଆମର ସବୁ କଥାରେ ହସୁଥାଅ । ଜ୍ଞାନ, ଅଜ୍ଞାନ, ଅଭିମାନ ଅବିଗୁଣ, ସୁଖ ଦୁଃଖ ହସ କାନ୍ଦ, ପାଇଁ ଆମର ଅଭିଯୋଗ, ଅନୁନୟ ସ୍ତୁତି ନିନ୍ଦା- ସବୁ କଥାକୁ ସେଇ ସ୍ଥିର ବିସ୍ତୃତ କୋମଳ ହସ । ରତ୍ନ ସିଂହାସନ ଉପରେ ବିଜେ ହେଲେ ଚନ୍ଦନ ଚିତା ପରି ସେ ହସଟିକୁ ମୁହଁରେ ଚିତ୍ରକରି ବସିଥାଅ ?- ତୁମ ମନକୁ ଆମ କଥା ପାଏ ନାହିଁ ବୋଲି ?- କଉତୁକ ଲାଗେ ବୋଲି ? ଆମକୁ ଭଲ ପାଅ ବୋଲି ?- ନା ସେମିତ ହସିବା ତୁମର ଅଭ୍ୟାସ ବୋଲି ??

ଏ କ୍ଷେତ୍ରକୁ ଆସ, ପାରି ହୋଇଯିବା, ବନ୍ଧୁ; ବାଟରୁ ଆଉ ସ୍ମୃତି ଗୋଟାଇବା ନାହିଁ । କିନ୍ତୁ ଆଡ ହୋଇ ଚାଲିଯିବା ଅବା କିପରି ? ତୁମେ ବଳେ ଠିଆ ହୋଇ ଯାଉଛ; ଆନମନା ହୋଇ ଶୂନ୍ୟକୁ ଚାହୁଁଚ କାହିଁକି ?- ହଁ, ଏଇଠି ଭୀଷ୍ମ ଦେବ ଶରଶଯ୍ୟା କରିଥିଲେ । ଅସଂଖ୍ୟ ଶରଫଳା ଦେଇ ଶ୍ମଶ୍ରୁଳ ପିତାମହଙ୍କର ପୁରାତନ ରକ୍ତ ଝରି ଏ ଭୂଇଁ ଓଦା ହୋଇଥିଲା ।... ଏଇ ସେଇ ନିମ୍ନଭୂମି, ଯେଉଁଠି କର୍ଣ୍ଣ ରଥର ଚକ୍ର ପଶି ଯାଇଥିଲା ମାଟି ଭିତରେ । ଆକାଶରୁ ଅଖଣ୍ଡ ଅଭିଶାପ ବର୍ଷୁଥିଲା । ସୂର୍ଯ୍ୟ ରକ୍ତ-ସମୁଦ୍ରରେ ଅସ୍ତମିତ ହେଉଥିଲା ।...କଟାହ ପରି ବୃତ୍ତାକାର ଏ ଭୂମି ସେଇ ଚକ୍ରବ୍ୟୂହର କେନ୍ଦ୍ର । ଏଇଠି କୁମାର ଅଭିମନ୍ୟୁ ବହୁ ଅସ୍ତ୍ରାଘାତରେ ସିଂହ ଶିଶୁପରି ଲୋଟି ପଡିଥିଲା । ମେଘ ଉହାଡ଼ରେ ଲୁଚି ଯାଇଥିଲା ଧର୍ମ ।... ଏଇଠି ମଧ୍ୟଭୂମି । ଏଇଠି ଜୟସ୍ତମ୍ଭ ! ଏଇଠି ଆରକ୍ତ ସାୟାହ୍ନରେ ମୁକ୍ତକେଶା ଯାଜ୍ଞସେନୀଙ୍କର ବେଣୀ ସଂହାର ହୋଇଥିଲା । ରକ୍ତ ଥୋପିଥିଲା ପରିତୃପ୍ତ କେଶାଗ୍ରରୁ, କ୍ରୋଧରେ କଂପୁଥିବା ନଖାଗ୍ରରୁ, ବିଦୀର୍ଣ୍ଣ ଯୋଦ୍ଧାର ବକ୍ଷରୁ, ବାହୁମୂଳରୁ !...ଆଉ ତେଣେ ଯିବା ନାହିଁ ବନ୍ଧୁ ! ତେଣିକି ହାହାକାର ହସ୍ତିନା ! ଭର୍ତ୍ତୃହରା କୁଳବଧୂମାନଙ୍କର ରୋଦନ ଶୁଣି ହେବନାହିଁ । ଅନ୍ଧ ଆଖିରୁ ଲୋତକପାତ ଦେଖି ହେବନାହିଁ । ପିତୃକୁଳକୁ ହରାଇଥିବା ସେ ପାଞ୍ଚଟି ବିଜେତାଙ୍କର ବିଷର୍ଣ୍ଣ ମୁହଁକୁ ଚାହିଁହେବନାହିଁ !

କୁରୁକ୍ଷେତ୍ର ତୁମ ପାଇଁ ଧର୍ମ କ୍ଷେତ୍ର । ତୁମେ ସେଇଠି କ'ଣ ଭାଙ୍ଗିଛ କ'ଣ ଗଢ଼ିଛ ତୁମକୁ ଜଣା । ଆମ ପାଇଁ ଏ ଭୂମି ଏକ ଦୁଃସହ କଣ୍ଟାବଣ । କୁରୁକ୍ଷେତ୍ରରେ କୁଞ୍ଜବନ ନାହିଁ, କଦମ୍ବ ନାହିଁ । ଆମେ ପାଟଳ ଫୁଲ ତୋଳି ମାଳ ଗୁନ୍ଥିଛୁ । କିନ୍ତୁ ଏତେ ପାଟଳ ରକ୍ତ, ଏତେ କଟା ମୁଣ୍ଡ ବୃନ୍ତରୁ ଝଡି ପଡିବାର ଦେଖି ନାହୁଁ କି ଜାଣି ନାହୁଁ ! ଏଠି ତୁମ ମୁକୁଟରେ ମୟୂର ଚୂଳ ନାହିଁ । ତୁମ ବେକରେ ବନମାଳା ନାହିଁ । ତୁମ ଆଖି ଆରକ୍ତ । ତୁମ ଭୃକୁଟି କୁଟିଳ । ତୁମ ଦେହରେ ଶ୍ରମଝାଳ; ମୁହଁରେ ଘୋଡ଼ାଟାପୁରୁ ଉଠୁଥିବା ଧୂଳି ପଟଳ । ତଥାପି ତୁମେ ସୁନ୍ଦର ଦିଶୁଛ । ତଥାପି ତୁମ ଓଠରେ ସେଇ ହସ ପାଖରେ ଆମେ ପ୍ରାଣ ବିକିଦେବୁ । କିନ୍ତୁ ତୁମେ ପୁଣି ମୁହୂର୍ତ୍ତକେ ହୁତାଶନ ପରି ଜଳି ଉଠୁଛ । ବିସ୍ତାରି ଯାଉଛ ଦିଗ୍‌ବିଦିଗ । ତୁମକୁ ଚାହିଁ ହେଉ ନାହିଁ । ସହସ୍ରେ ସୂର୍ଯ୍ୟ ପରି ତୁମେ ଜଳୁଛ । ତୁମକୁ କଳି ହେଉନାହିଁ । ଏ ରୂପ ପାଇଁ ଦେବତା ମାନେ ନିଶିଦିନ ଆଶାକରି ରହିଛନ୍ତି । ସିଦ୍ଧସାଧକ ଅପେକ୍ଷା କରି ରହିଛନ୍ତି । ଆମେ କିନ୍ତୁ ତୁମର ଏ ଭୟାବହ ରୂପକୁ ନେଇ କ'ଣ କରିବୁ; କେଉଁଠି ସଂପାଦିବୁ ? ଚାଲ ଏ ରକ୍ତ ନଦୀ ପାର ହୋଇଯିବା ବନ୍ଧୁ ! ଓଃ, ଆମେ ବରଂ ଆଖି ବୁଜି ଦେଉଛୁ, ତୁମେ ହିଁ ପାର କରି ଦେଇ ଯାଅ !

XXX ଜନ୍ମ ମାଟି ହୋଇଥିବାରୁ ଏ ମଥୁରା ନଗରୀ ତୁମକୁ କେମିତି ଦିଶୁଥିବ କେଜାଣି, କିନ୍ତୁ ଆମ ପାଇଁ ମଥୁରା ସବୁବେଳେ ନଈ ଆରପାରି ଅନ୍ଧାର । ସେଇଠି ଚିରକାଳ କଂସ ରାଜୁତି କରୁଥାଏ । ମୁଷ୍ଟିକ, ଚାଣୁରମାନେ ତାକୁ ଘେରି ରହିଥାନ୍ତି । ସେ ଜଗତି ଉପରେ ବସି ଟହ ଟହ ହସୁଥାଏ । ମଥୁରା ପାଷାଣମୟ ପାଚେରୀମୟ ବନ୍ଦୀଶାଳ । ସେଇଠି ଆତ୍ମୀୟମାନଙ୍କୁ ଶାଙ୍କୁଳିରେ ବାନ୍ଧି ରଖାଯାଏ । ଜନ୍ମିତ ଶିଶୁମାନଙ୍କୁ ଶିଳାରେ ଛେଚି ନିପାତ କରାଯାଏ । ଅତ୍ୟନ୍ତ କ୍ରୂର ଭୂମି, ରୁକ୍ଷ ଅନାତ୍ମୀୟ ଭୂମି ଏଇ ମଥୁରା । ...ତଥାପି ଭାଗ୍ୟବତୀ ମଥୁରା ତୁମକୁ ତ ଜନ୍ମ ଦେଇଛି । ସେଥିପାଇଁ ସେ ମଥୁରା ନୁହେଁ, ମଧୁରା । ଯଦି କଂସ ନଗରୀରେ କୃଷ୍ଣ ସମ୍ଭବିଗଲା ସେ ଆଉ କି କଂସ ? ସେଇ ଦିନଠାରୁ ଜାଣି ମଥୁରାରେ ମଧୁ ସଂଚାର ହୋଇଗଲା; କଂସପୁର ମଧୁପୁର ହୋଇଗଲା ।

କଂସର ଭିତରଯାକ ଅନ୍ଧାର ହୋଇଥାଉ ସେଥିରେ କଣିକାଏ ଉନ୍ମୁଖତା ତ ନିଶ୍ଚୟ ଅଛି ଯେ କୃଷ୍ଣକୁ ଆବାହନ କରୁଛି । ସେହିପରି ତୁମେ ଯାହା ମନ ତାହା

ହୋଇଥାଅ, ମାତୁଳ କ୍ରମରେ ତୁମ ଭିତରେ କିଛି ମାତ୍ରାରେ କଂସ ଭାବ, କିଛି କିଛି କ୍ରୂରତା ଲୁଚି ରହି ନାହିଁ ବୋଲି କହି ପାରିବ କି ? ଆମେ କିନ୍ତୁ କୃଷ୍ଣ ବିଭୋର ପ୍ରାଣୀ । କଂସ ଆମକୁ କଷଣ ଦେଉଥିଲେ ସୁଦ୍ଧା ଆମର ବେଳ ନାହିଁ ତା ବିଷୟ ଚିନ୍ତା କରିବାକୁ ?

...ଏଇ ସେଇ ରାଜ ନବର । ଖୁଆଡ ଖୁଆଡ଼ ଘର । ପ୍ରସ୍ତ ପ୍ରସ୍ତ ପାଚେରୀ । ପଥରର ବିଚିତ୍ର ଗଂଫା ଭିତରେ ଅସୁର ଗର୍ଜୁଛି । ଏଡ଼େ ପ୍ରତାପୀ ପୁଣି ଏତେ ଭୟାତୁର ହୁଅନ୍ତି ? ବର୍ଷ ବର୍ଷ ଧରି ତାକୁ ରାତିରେ ନିଦ ନାହିଁ କି ଦିବସରେ ଭୋକ ନାହିଁ । ତା ମର୍ମ ଥରୁଛି ଭୟରେ । ସବୁବେଳେ ଶୂନ୍ୟବାଣୀ ଶୁଭୁଛି- 'ମରିବୁ ମରିବୁ ଅସୁର ।' ଅଷ୍ଟମ ଗର୍ଭକୁ ବେନିଫାଳ ହୋଇଯିବ ତା ପୃଥ୍ୱୀ । ଛିଣ୍ଡି ପଡିବ ଆକାଶ । ସବୁବେଳେ ଓହଳି ରହିଥିବା ପାହାଡ଼ ପରି ମୃତ୍ୟୁ ତା ମୁଣ୍ଡ ଉପରେ ଝୁଲି ରହିଛି । ସେ ସେଥିପାଇଁ କ୍ରୂର ଶିଶୁହନ୍ତା ହେଲା ବୋଲି ତାକୁ ସେମିତି ମରଣ ଆତଙ୍କରେ ଶିଝେଇ ଶିଝେଇ ତା ପିଣ୍ଡକୁ ଦୁହିଁବା କ'ଣ କ୍ରୂରତା ନୁହେଁ ? ମାମୁଟିକୁ ମାରିବାକୁ ତୁମକୁ କେତେ ଘଡି ? ତାକୁ ଏମିତି ଲକ୍ଷେଥର ମାରି ମାରି ଶେଷକୁ ସେ ଦୋରୁଅ ଚିପୁଡ଼ା ହୋଇଥିବା ଫଳଟିଏ ପରି ମଞ୍ଚାରୁ ଖସି ପଡିଲା । ତୁମକୁ ଦେଖିଦେଲା; ମରିଗଲା ! ତୁମକୁ ଦେଖିଲେ ହିଁ ତ ମରିବାକୁ ହୁଏ । କିଏ କେଉଁ ବାଗେ ମରେ । ହେଇ ଆମକୁ ଦେଖୁନ !

...ନବର ଦକ୍ଷିଣ ପଟେ ବନ୍ଦୀଶାଳ ।... ଏଇ ସେଇ ଶିଳା । ଏଇଠୁ ସଦ୍ୟ ଜାତ ଶିଶୁର ଆର୍ତ୍ତନାଦ ବନ୍ଦୀଶାଳା ଭିତରକୁ ଶୁଭିଥିବ ତ' । ବିଦୀର୍ଣ୍ଣ ସୁକୁମାର ରକ୍ତମାଂସ ଛିଟିକି ଯାଇଥିବ କାନ୍ଥ ସାରା ! ଦେବକୀ ବସୁଦେବର ରକ୍ତ ? ତୁମର ରକ୍ତ !... ଏଇ ସେଇ ହାତୀଶାଳ । ଏଇଠି ହାତୀପରି ହିଂସା ପାଳିତ ହେଉଥିଲା । ତା' ପାଖକୁ ମଲ୍ଲଶାଳ । ବିଧାଘାତେ ଚିତ୍ରକୂଟ ମହୀଧର ଚୂନା ହୋଇଯାଉଥିଲା ।... ବଡ଼ ବିଷମ ଏ ମଥୁରା କଟକ । ଏଇ ସେଇ ମଥୁରା ଦାଣ୍ଡ ଯେଉଁଠି ତାତିଲା ପଥର ଉପରେ ଆଷାଢ଼ ବର୍ଷା ପରି ବହି ଯାଇଥିଲା ଗୋପର ସ୍ନିଗ୍ଧ ଧାର । ବେଣୁ ଧ୍ୱନିର ମୂର୍ଚ୍ଛନା । ଗୋପାଳଙ୍କ ଢଳି ଢଳି ନାଚିବାର ଛନ୍ଦ, ଭାର ଭାର ଦହି ଦୁଧର ମଧୁରତାରେ ଗୋପାୟିତ ହୋଇଥିଲା ମଥୁରା ଦାଣ୍ଡ । ମାଥୁରୀ ନାରୀ ମାନେ ମାଧୁର୍ଯ୍ୟରେ ମାଧୁରୀ ଗୋପିନୀ ହୋଇଗଲେ । ସବୁ କୁଜ ସଳଖ ଗଲା । ସବୁ ନାରୀ ବଲ୍ଲୀରେ ଫୁଟିଗଲା

ଅନୁରାଗର ଫୁଲ । ସେ କେହୁ ନାରୀ ଯେ ମୋହନକୁ ଦେଖି ଦ୍ରବି ନ ଯିବ ? କିଏ ଅଛି ଯେ ଜୀବନ ଯୌବନ ଅର୍ପି ନ ଦେବ ? ସେମାନେ ଆମ ଠାରୁ ତୁମକୁ ଛଡ଼ାଇ ନେଇଥିଲେ । ଭାବିଥିଲେ ମଥୁରା ଘେର ଭିତରେ ଚିରକାଳ ସେ ନୀଳମେଘ ବର୍ଷୁଥିବ ! ସେ କ'ଣ ଜାଣିଛନ୍ତି ମେଘକୁ ଆଙ୍କୁଡ଼ା ନାହିଁ ବୋଲି ! ସେ ଯେମିତି ଦିନେ ଭାସି ଆସିଲା ଦିନେ ସେମିତି ଭାସି ଚାଲିଯିବ । ମଥୁରା ନାରୀଙ୍କ ଦୁର୍ଦ୍ଦଶା ଆଉ କିଏ ନ ବୁଝୁ ଆମେ ବୁଝି ପାରୁଛୁ !

ମଥୁରା କିନ୍ତୁ ସେତିକି ବେଳେ ମଥୁରା ଯେତେବେଳେ ସେ ଘନଘୋର ଅନ୍ଧାରରେ ବୁଡ଼ିଥାଏ । ସେତିକି ବେଳେ ସେ ବୋଧହୁଏ ତୁମର ସବୁଠାରୁ ବେଶିପ୍ରିୟ । ଅନ୍ଧାର ହିଁ ତୁମର ପ୍ରିୟ କାରଣ ତୁମର ସବୁ ରହସ୍ୟକୁ ସେ ଗୋପନ ରଖିପାରେ । ସେଥିପାଇଁ ବୋଧେ ପ୍ରିୟଜନର ଗୁଣ ପରି କଳାରଙ୍ଗଟିକୁ ତୁମେ ଏତେ ଆପଣାର କରି ନେଇଛ !

...ସେ ଦିନ ରାତିରେ ଅପର୍ଯ୍ୟାପ୍ତ ମେଘ । ନୀରବ ମଥୁରା । ନିର୍ଜନ ରାଜଦାଣ୍ଡ । ବେଦନାମୟ ବନ୍ଦୀଶାଳା । ସମସ୍ତଙ୍କ ଅଲକ୍ଷ୍ୟରେ ମେଘାଚ୍ଛନ୍ନ ଅନ୍ଧାର ଭିତରେ ତୁମେ ଆସି ଅଭୂତେ ଆବିର୍ଭୂତ ହେଲ । ସେଥିପାଇଁ ଅନ୍ଧାର ଘନୀଭୂତ ହେଲା । ସଂକଟ ବି ଘନୀଭୂତ ହେଲା । କେ ସହୁ ଦେବକୀ କଷଣ ! ବସୁଦେବର ମଧ୍ୟ ଚରମ ପରୀକ୍ଷା । ବାପଟିଏ ବିଚରା, ମଣିଷଟିଏ ! ମୁଣ୍ଡ ଉପରେ ସଦ୍ୟଜାତ ଶିଶୁ । ପଛରେ ଜିଘାଂସା ଆତଙ୍କର ଅନ୍ଧାର । ଆକଣ୍ଠ ଯମୁନା । ଆଚ୍ଛନ୍ନ ଆକାଶ । ଏଭଳି ଏ ନଦୀକୁ ତୁମେ ପ୍ରଥମେ ଲଂଘନ କରିଛ । ପଛରେ ଛାଡି ଆସିଛ ନୀରବ ଲୁହରେ, ରକ୍ତରେ ଜୁଡୁବୁଡୁ ଜନନୀଟିଏ ।... ବାରବର୍ଷ ପରେ ପୁଣି ଲଂଘି ଆସିଛ ଏ କୂଳକୁ । ଆରପଟେ ଛାଡି ଆସିଛ ଲୁହରେ, କ୍ଷୀରରେ ଜୁଡୁବୁଡୁ ରୋରୁଦ୍ୟମାନା ମା'ଟିଏ । ବିନା ଦୋଷରେ ଦୁହିଁଙ୍କୁ ଦଣ୍ଡିଛ । ତୁମକୁ ଜନ୍ମ ଦେଲେ, ତୁମକୁ ଦୁଗ୍ଧ ଦେଲେ ବୋଲି ଦଣ୍ଡ ଦେଇଛ ? ଛାଡ, ସେ ସବୁ ଢଙ୍ଗ ତୁମର ! ତୁମେ ତ ଆଉ କାହା ଭଳି ହୋଇ ନାହିଁ ଯେ ତୁଳନା କରି କହିଦେବ ! 'ତୁମି ହି ତୋମାର୍ ତୁଲନା ଶାମ୍'..! ଆସ ଆଉ ଥରେ ଯମୁନା ପାରି ହୋଇଯିବା । ଆସ ବନ୍ଧୁ, ଯିବା ଘରକୁ ! ଏଇତ ସେଇ ପୁରୁଣା ନଈ । ଯା'ରି ପାଣିରେ କେତେ ଖେଳ ! ଯା'ର କୂଳରେ କେତେ କଉତୁକ ! ମଥୁରାରୁ ଗୋପକୁ ଯିବା କ'ଣ ସହଜ ନା ଗୋପରୁ ମଥୁରା ଆସିବା ସହଜ ! ତୁମେ ଉଭୟ ସାଧିଛ । ଗଲାବେଳେ ବସୁଦେବକୁ ବୁଡ଼ାଇଥିଲ;

ଆସିଲାବେଳେ ଅକ୍ରୂରକୁ । ଆମେ ତ' ବନ୍ଧୁ ସହଜେ ବୁଡ଼ିଛୁ- ଆସ, ଆଉ ବିଳମ୍ବ କର ନାହିଁ । ଆଜି ଚାରି ଦିନର କଷ୍ଟ ପୂରିଗଲା । ଆସ, ଗୋପକୁ ଯିବା !

...ଦେଖୁଛ ତ' ସନ୍ଧ୍ୟାର ଶୀତଳ ଅନ୍ଧାରରେ ଯମୁନା କେମିତି ସ୍ତବ୍‌ଧ ହୋଇ ଆସୁଛି ! ତୁମକୁ ସେ ବାରି ଦେଲାଣି । ତୁମେ ତୁମର ବହୁବିଧ ଆବରଣ ଭିତରୁ ବାହାରି ଆସ ଏଥର । ଆଉ କାହାକୁ ଲୁଚିଛ ? ତୁମ ଦେହର ଚନ୍ଦନ ସୌରଭ ପବନରେ ସଂଚରି ଯାଉ । ଗୋପ ନିଶ୍ଚେତ ହୋଇ ପଡିରହିଛି କେଉଁ କାଳୁ । ଗୋପୀ ଗୋପାଳ, ନନ୍ଦଯଶୋଦା, ତରୁତୃଣ, ଧେନୁବତ୍ସାଦି ସମସ୍ତେ ସେ ସୁଗନ୍ଧରେ ଚମକି ଉଠନ୍ତୁ । ଏଥର ତ ଆଉ ସ୍ୱପ୍ନ ନୁହେଁ । ତୁମେ ଯାଇ ଠିଆ ହୋଇଯିବ ପ୍ରତ୍ୟକ୍ଷ ବ୍ରଜଦାଣ୍ଡରେ, ଆଜି ଏ ରାସପୂର୍ଣ୍ଣିମାରେ !...ସେମାନେ କମ୍ପି ଉଠିବେ । ଉନ୍ମତ୍ତ ହୋଇ ନାଚିବେ, ପ୍ରଳାପ କରିବେ । ତୁମକୁ ଛୁଇଁ ଦେଇ ମୂର୍ଚ୍ଛା ଯିବେ । କୋଳ କରି ପ୍ରାଣ ହାରି ଦେବେ । ଏତେ ପୁଞ୍ଜୀଭୂତ ଆବେଗ, ଏତେ ଉତ୍କଣ୍ଠା ପରେ ସ୍ୱପ୍ନ ଭୂମିରେ ଦୋହଲୁଥିବା ସେ ଦୁର୍ବଳ ପିଣ୍ଡଗୁଡ଼ିକ ଆନନ୍ଦର ଏ ପ୍ରବଳ ବନ୍ୟାକୁ ସମ୍ଭାଳିବେ କିପରି ? ଆମେ ସମ୍ଭାଳିବୁ କିପରି ?... ଆମର ଅଙ୍ଗ କେମିତି ପୁଲକିତ ହେଉଛି ଦେଖ ! କମ୍ପୁଛି ବେପଥୁରେ ! ଆଖିକୁ ଜଳାର୍ଣ୍ଣବ ଦିଶୁଛି । ବାକ୍ୟ ସ୍ଫୁରୁ ନାହିଁ... 'ହା କୃଷ୍ଣ' ବୋଲି ଜୀବ ଛାଡିଯିବ କି ସତେ ! ସତେ ତୁମେ ଗୋପକୁ ଆସୁଛ ଗୋପୀନାଥ ? -ସତେ ଗୋପ ଘାଟରେ ନାଆ ଲାଗୁଛି ? ସମ୍ଭାଳି ଯାଅ ଗୋପାଳେ ! ତୋଳିଧର ଏ ଅମୂଲ୍ୟ ନିଧିକୁ ।

...ଆଜି ରାସପୂର୍ଣ୍ଣିମା ! ଆକାଶରୁ ମଧୁବର୍ଷା ହେଉଛି । ଅସ୍ପଷ୍ଟ ବେଣୁ ଧ୍ୱନିତ ହେଉଛି ଦିଗ୍‌ବଳୟିରୁ । ହେଇ, ଦେଖ ଜୀଇ ଉଠୁଛି ବ୍ରଜଭୂମି । ଖୁବ୍ ଦୂରରୁ ଦୂରକୁ ଚାଲିଯାଉଥିବା ରଥର ଘର୍ଘର ଶୁଭୁଛି । ଘୋଡ଼ାଟାପୁ ଶୁଭୁଛି ।... ଆସ୍ତେ ଲୀନ ହୋଇଯାଉଛି । ଘେରି ଆସୁଛି ନିଶ୍ଚଳ ଜହ୍ନରାତିର ଘନୀଭୂତ ନୀରବତା । ତାହାର ଗର୍ଭରେ ଅତି କ୍ଷୀଣ ବିଳମ୍ବିତ ବେଣୁଧ୍ୱନି ପରି ନାରୀ କଣ୍ଠର ବିଳାପ ଶୁଭି ଶୁଭୁ ନାହିଁ । ଅତି ସୁଦୂର ସୂଚ୍ୟଗ୍ର ଶବ୍ଦ ।...ରାସପୂର୍ଣ୍ଣିମା ଜହ୍ନ ଆଲୁଅରେ ଏହିପରି ବିଳାପର ଧ୍ୱନି ସବୁବେଳେ ଗୁଞ୍ଜରୁଥାଏ ଏ ନିସ୍ତବ୍ଧ ବନ ଭୂମିରେ । ଆଜି କିନ୍ତୁ ଏ ଧ୍ୱନି ଗୁଡ଼ିକ ଘନୀଭୂତ ହୋଇ ଛିଡ଼ା ହୋଇଯିବେ ନାରୀରୂପରେ । ଶୀତଳ ଜ୍ୟୋତ୍ସ୍ନା ତରଳି ଯିବ ଦୁଗ୍ଧଫେନ ପରି । ଗୋପରେ ଗୁଞ୍ଜରି ଉଠିବ ଜୀବନ । ଧୂଳିରୁ ଉଠି ଆସିବେ ଲତା,

ଗୁଳ୍ମ, କଦମ୍ବ । ସମସ୍ତେ ଭରିଯିବେ ଫୁଲରେ, ମହକରେ, ପରାଗରେ । ଅଦଭୁତେ ପକ୍ଷୀସ୍ୱନ ଶୁଣାଯିବ ଲତାବିତାନମାନଙ୍କରେ । ନଦୀଘାଟରେ କଳସକଙ୍କଣର ନାଦ ସହିତ ନୂପୁରର ନିକ୍ୱଣ ଶୁଭିବ । ହେଇ ତ' ଶୁଭିଲାଣି ! ତୁମେ ଶୁଣି ପାରୁଛ ତ' ?

...ତୁମେ କ'ଣ ଲାଜଲାଜ ହୋଇ ଠିଆ ହେଲ ମ ! ତୁମେ କ'ଣ ଏଯାଏଁ ବ୍ରୀଡାବିଷ୍ଟ ହୋଇନାହଁ, ଗୋପୀନାଥ ? ଆଖି ଟେକି ଚାହଁ । ବ୍ରଜଭୂମିରେ ରାସପୂର୍ଣ୍ଣିମାରେ କିଛିକାଳ ବୁଡ଼ିଗଲେ ତୁମ ଦେହରୁ ଅବସାଦ ଧୋଇ ହୋଇଯିବ । ତୁମେ ତ' ଲହୁଣୀ-ପାଳିତ ନନ୍ଦ ଦୁଲାଳ । ତୁମକୁ ସେଭଳି ପୁରସ୍ତମରେ, ସେମାନଙ୍କ ପାଖରେ ଏତେ ସ୍ନେହ ବା' କାହିଁ ? କେଉଁଠୁ ଦେବେ ବିଚାରା ?

...ହେଇ, ଦେଖ ଯଶୋବନ୍ତୀ ଆସୁଛନ୍ତି । କେଡ଼େ ଦୁର୍ବଳ ହୋଇଯାଇଛନ୍ତି , ଦେଖୁଛ ? ତାଙ୍କୁ ବିଶ୍ୱାସ ହେଉନାହିଁ ତୁମେ ଆସିଛ ବୋଲି । ଚାରିଆଡ଼କୁ ଛନକା ହେଲା ପରି ଚାହୁଁଛନ୍ତି, ମନକୁ ମନ ଗୁଣି ହେଉଛନ୍ତି, 'ଘଟଣ ନ ଦିଶେ ପୁର ନଥିଲେ ଗୋବିନ୍ଦ ଲୋ' ! ବାହୁନି ହେଉଛନ୍ତି, "ଖଣ୍ଡକ୍ଷୀର ଦେବି ମୁଁ କାହାକୁ ?'... ତାଙ୍କ ଆଗରେ ହୁ' କିନା ଉଭା ହୋଇ ଯାଅ ନାହିଁ, ତାଙ୍କ ଛାତି ଫାଟିଯିବ । ସେ ପ୍ରଥମେ ତୁମ ସୁଗନ୍ଧ ବାରି ଅନୁଭବ କରନ୍ତୁ । ପୁଅ ପୁଅ ବାସୁ ବ୍ରଜଭୂମି ! ତୁମର କୋମଳ ପଦପାତ ସେ ଶୁଣନ୍ତୁ । ମଧୁର ହସ ଶୁଣନ୍ତୁ । ଆଖି ବୁଜି ହର୍ଷପୁଲକରେ ଅଭ୍ୟସ୍ତ ହୁଅନ୍ତୁ । ତା'ପରେ କିନ୍ତୁ ତାଙ୍କ ସାଙ୍ଗେ ଆଉ ଛଳ ଆଚରଣ କର ନାହିଁ । ସେ ସମ୍ଭାଳି ପାରିବେ ନାହିଁ । ତାଙ୍କ ଆଗରେ ଠିଆ ହୋଇଯାଅ ।

...ଝରଝର ଝରୁଛି ଆକାଶରୁ ଜ୍ୟୋତ୍ସ୍ନା । ପାଗଳିନୀ ଯଶୋଦା ଉଲ୍ଲାସରେ ଅବିଶ୍ୱାସରେ ଥରଥର କମ୍ପୁଛନ୍ତି । 'ଆସ ହେ ବ୍ରଜବାସୀ ! ଆସ ଗୋପୀମାନେ । ଦେଖ, ଆସିଛି ମୋ କଳା କାହ୍ନୁ । ମୁଁ ତାକୁ କୋଳ କରିଛି; ମୋ ରଙ୍କନିଧିକୁ ମୁଁ ବାହୁ ବେଢ଼େଇ ଧରିଛି । ସ୍ୱପ୍ନ ନୁହେଁ! ଜମା ସ୍ୱପ୍ନ ନୁହେଁ! ହେଇ ପରା ଜହ୍ନପରି ତା' ମୁହଁ, ତା' ହସ, ତା' ଚାହାଣି । ହେଇ ତା'ର ଧୂଳିଧୂସର ତନୁ ! ଆ, ମୋ ଧନ, ମୁଁ ତୋ ମୁହଁ ପୋଛିଦିଏ । ଦୁଧସର ଭୁଞ୍ଜାଇଦିଏ ! କେତେ କାଳୁ ଭୁଞ୍ଜିନାହିଁ ପରା !!" ...ଯଶୋଦା ଅହରହ ଝରି ଯାଉଥିବା ଏକ ସ୍ତନ୍ୟଧାର ! ଅବିରତ ବିହ୍ୱଳ ବହିଯାଉଥିବା ଅଶ୍ରୁଧାର ! ଯଶୋବନ୍ତୀ ଲାବଣ୍ୟମୟୀ, ତାଙ୍କ ସ୍ପର୍ଶ ନବନୀତ, ବାକ୍ୟ ନବନୀତ ! ଦୃଷ୍ଟି ନବନୀତ ! ସ୍ନାନ କର ସେ ଅଶ୍ରୁରେ, ସେ ଦୁଗ୍ଧରେ, ସେ

ନବନୀତରେ ! ସେଥିରେ ସମସ୍ତ କଠୋରତା ରୁକ୍ଷତା କୋମଳ ହୋଇଯାଉ । ସ୍ନେହସାର- ଶୂନ୍ୟ କ୍ଷାଠିଏ ପଉଟିରେ ଲବଣୀ ସଂଚାର ହୋଇଯାଉ । ଗୋପସ୍ପର୍ଶରେ ତୁମର ଅଙ୍ଗ ସକଳ ପଲ୍ଲବିତ ହୁଅନ୍ତୁ । ତୁମେ ମଧୁର ହୁଅ । କୋମଳ ହୁଅ । ପୁନର୍ବାର ପ୍ରେମମୂର୍ତ୍ତି ହୋଇ ଉଭା ହୁଅ ।

ମରାଳୀ ପରି ଗ୍ରୀବାଭାଙ୍ଗି ସ୍ତବ୍ଧ ଚାହିଁ ରହିଛନ୍ତି ହତଚେତ ଗୋପିନୀମାନେ । ଟିପ ବାଜିଗଲେ ପଡିଯିବେ । ପ୍ରଥମ ଦର୍ଶନରେ ସେମାନଙ୍କ ଚେତା ବୁଡିଯାଇଛି । ବାରମ୍ବାର ସ୍ୱେଦପୁଲକରେ ସେ ଅପଘନ ଗୁଡ଼ିକ ନିର୍ଜୀବ ପ୍ରାୟ । ତାଙ୍କୁ ଚମକାଇ ଦିଅ ନାହିଁ । ସେମାନେ ଧୂଳିସାତ୍ ହୋଇଯିବେ !... ବହୁ ଦୂରରେ ଜ୍ୟୋତ୍ସ୍ନାସ୍ନାତ କଦମ୍ବ । ଅତି ଅସ୍ପଷ୍ଟ, ସେଇ ଜ୍ୟୋତ୍ସ୍ନାପରି ମଧୁର, ପରିବ୍ୟାପ୍ତ ଅଥଚ ସୂକ୍ଷ୍ମ ବେଣୁଧ୍ୱନି ଶୁଭୁଛି । ନିଶ୍ଚଳ ପ୍ରତିମାଙ୍କ ଭିତରେ ଚକିତ ଆତ୍ମାଗୁଡ଼ିକୁ ସେ ଜାଗ୍ରତ କରୁଚି । ସେମାନେ କର୍ଣ୍ଣମୟ ହୋଇ କମ୍ପୁଛନ୍ତି । ଟଳମଳ ହେଉଛି ପଦପାତ । ଥରଥର ସର୍ବାଙ୍ଗ । ରାସପୂର୍ଣ୍ଣିମାରେ ବ୍ରଜଭୂମିର ସ୍ୱପ୍ନ ଥରି ଉଠୁଛି । ଅର୍ଦ୍ଧଚେତ ଅବସ୍ଥାରେ ସେମାନେ ଭାସିଯାଉଛନ୍ତି ବେଣୁଧ୍ୱନିରେ ।... କେଉଁ କୁଞ୍ଜବନରେ କାହା ପାଇଁ କିଏ ବେଣୁନାଦ କରୁଛି ?... ନିସ୍ତବ୍ଧ ଶୀତଳ ରାସପୂର୍ଣ୍ଣିମାର ଜହ୍ନ ରାତିରେ କିଏ ସେ ଡାକୁଛି ? ଏ କ'ଣ ସେଇ ? ସେଇ, ଯେ ଯାଇଥିଲା ? କୁଞ୍ଜବନରେ ଫୁଟି ଉଠୁଛି ଅପର୍ଯ୍ୟାପ୍ତ ଫୁଲ । ସୁରଭିତ ପବନରେ କିଏ ଉତ୍ତର ଦେଉଛି 'ନା, ଗୋ ନା ! ସେ କେବେ କୁଆଡ଼େ ଯାଇ ନାହିଁ । ଏଇଠି ସେ ତୁମପାଇଁ ଅହର୍ନିଶ ବେଣୁବାଦନ କରୁଛି । ଅପେକ୍ଷା କରିଛି !"... "ସତେ ? ...ସତେ ?...ସେ ଏଇଠି ଅଛନ୍ତି ? ଆମକୁ ଡାକୁଛନ୍ତି ?... ଆସ ଗୋ ଆସ । ଝାସ ଦେବା କୃଷ୍ଣରେ ନ ହେଲେ କାଳିନ୍ଦୀରେ ।' ନିକ୍ୱଣିତ ହେଉଛି ଜମୁନାର ତଟଦେଶ । କଙ୍କଣ ବଳୟର ରୁଣୁନାଦରେ ମିଶିଯାଉଛି ଅସ୍ପଷ୍ଟ ନାରୀକଣ୍ଠର କୂଜନ । ଆସ୍ତେ ଘନୀଭୂତ ହେଉଛି ରାସପୂର୍ଣ୍ଣିମାର ଜ୍ୟୋତ୍ସ୍ନା । ସହସ୍ର ପଦପାତରେ ମୃଦୁଳ ଛନ୍ଦ, ସହସ୍ର ବେଣୁଧ୍ୱନିରେ ସହସ୍ରଧାର ଅମୃତ ବର୍ଷୁଛି !... ତୁମ ବାଙ୍କଚୂଳ ବେଶ, ଠିଆ କିଆ ବେଶ ଅପୂର୍ବ ଶୋଭାବନ ଦିଶୁଛି । ପାଟଚିମୁଳିରେ ଛେଚା ଖାଇ ପହଣ୍ଡି ବିଜେ କରୁଥିବା ଠାକୁର କ'ଣ ଏ ମଧୁର ହଲ୍ଲୀଷକରେ ଏତେ ଭଙ୍ଗୀରେ ନାଚୁଛନ୍ତି ? ଏଇ ସେଇ ରଙ୍ଗା ଚରଣ ପରା ! ଯାକୁ ଗୋପ୍ୟାନ କରି କି ସୁଖ ପାଉଛ ସେଇଠି ?... ଗୋପିନୀମାନେ ଏକେ ଏକେ କୋଳାଗ୍ରତ କରୁଛନ୍ତି

ଲାବଣ୍ୟନିଧିଙ୍କୁ ! ଯୁଗଳରୂପର ଷୋଳ ସସ୍ର ବିମ୍ବ ବ୍ୟାପି ରହିଛି ବୃନ୍ଦାବନ । ମାଧୁର୍ଯ୍ୟ ପାନ କରୁଛନ୍ତି ବ୍ରଜଧୂଳିଠାରୁ ତାରାମଣ୍ଡଳ ଯାଏଁ ଜଡ଼ ଚେତନ ସ୍ଥାବର ଜଙ୍ଗମ ! ବ୍ରଜମୟ ହୋଇଯାଉଛି ବିଶ୍ୱ ବ୍ରହ୍ମାଣ୍ଡ !

ରାସପୂର୍ଣ୍ଣିମାର ଜହ୍ନ ଆକାଶର ମଧ୍ୟରେଖା ପାରି ହୋଇଯାଇଛି । ଢଳଢଳ ହେଉଛି ଅସଂଖ୍ୟ ବିମ୍ବ । ମଧୁଚକ୍ରର କେନ୍ଦ୍ରକୁ ଟାଣି ହୋଇଯାଉଛି ସମସ୍ତ ଛନ୍ଦ, ସବୁ ବେଣୁଧ୍ୱନି । ପୂର୍ଣ୍ଣିମାର ତୃତୀୟ ଯାମରେ ଏକମାତ୍ର ଯୁଗଳ ବନ୍ଧରେ ସମାହିତ ହୋଇଯାଉଛି ସକଳ ମାଧୁର୍ଯ୍ୟ ! କିଏ ସେ ଗୋପିନୀମାନଙ୍କର ଆତ୍ମା, ସମଗ୍ର କୁଞ୍ଜବନର ସୌରଭ ସମସ୍ତ ଫୁଲ ପାଖୁଡାର କୋମଳତା, ଏ ରାସପୂର୍ଣ୍ଣିମାର ମଧୁଜ୍ୟୋତ୍ସ୍ନା- ସେ କ'ଣ ବୃଷଭାନୁ ଜେମା ? ମଧୁଚକ୍ରର କେନ୍ଦ୍ରରେ ଚିତ୍ତ ସମାହିତ, ବୁଦ୍ଧି ସମାହିତ, ପ୍ରାଣ ସମାହିତ । ସବୁ କେବଳ ନୀରବ ଜ୍ୟୋତ୍ସ୍ନା, ତରଳ ମାଧୁର୍ଯ୍ୟ... !

କୁଞ୍ଜବନର ଦୀର୍ଘଛାୟା ଉହାଡ଼ରେ ନିସ୍ତବ୍ଧ ଜହ୍ନ ନଇଁ ଯାଉଛି କି ? ତୁମେ କ'ଣ ସ୍ତବ୍ଧ ହୋଇଯାଉଛ ଗୋପୀନାଥ ?... ସବୁ ଢଳଢଳ ଦିଶୁଛି.. ତରଳି ଯାଉଛି ? ତୁମେ କ'ଣ ତରଳି ଯାଉଛ କି ? ତୁମର ମୁଗ୍ଧ ବିଭୋର ରୂପ କ'ଣ ସ୍ଥାଣୁ ପରି ସ୍ଥିର ହୋଇ ଯାଉଛି ? ତୁମେ କ'ଣ ନିଷ୍ପଲକ ଚାହିଁ ରହୁଛ ? ତମେ କ'ଣ ଦାରୁ ହୋଇଯାଉଛ, ନା ବ୍ରହ୍ମ ? - ତୁମେ... ଛଦ୍ମ କରନା- ଆମେ ବିମୁଢ଼... ଆମ ଆତ୍ମା ପୁରୁଷକୁ ଶୁଣ !- ଯାଅ ନାହିଁ ବନ୍ଧୁ, ଗୋପକୁ ଛାଡି ଆଉ ଯାଅ ନାହିଁ ।

□□□

# ⊙

ଲୋକାଚାରକୁ ସିନା ଚନ୍ଦନଯାତ ପାଇଁ ବିଜେ ପ୍ରତିମା ମଣିବିମାନରେ ନରେନ୍ଦ୍ର ଚାପକୁ ଯାଆନ୍ତି, ଏଣେ ନିଛାଟିଆ ଜହ୍ନରାତିରେ ନୀଳାଦ୍ରି ଉଆସରେ ଖୋଦ୍ ମଣିମା ରତ୍ନ ସିଂହାସନରୁ ଓହ୍ଲେଇ ଆସି ଅଗଣାମାନଙ୍କରେ ପଦ ଚାରଣ କରନ୍ତି ବୋଲି ପ୍ରଗାଢ଼ ବିଶ୍ୱାସ ହେବାରୁ ତାଙ୍କୁ ସେ ନିରୋଳା ମୁହୂର୍ତ୍ତରେ ଦର୍ଶନ କରିବା ଅଭିଳାଷରେ କୈବଲ୍ୟ ହାଟ ଉପରେ ଛାୟା ବିସ୍ତାର କରିଥିବା ବଟ ବୃକ୍ଷରେ ଆମ୍ଭେ ଦେଉଳ ଶୋଧ ବେଳେ ଲୁଚି ରହିଥିଲୁ । ନିଶାର୍ଦ୍ଧ ସରିକି ନିଶବ୍ଦରେ ଆସି ଚୈତନ୍ୟ ପାଦାଙ୍କ ପଶ୍ଚାତ୍‌ରେ ଛପି ବସିଥିଲୁ । ନିସ୍ତବ୍ଧ ଉଆସ ଜହ୍ନଆଲୁଅରେ ମଧୁସ୍ନାତ ସ୍ୱପ୍ନପୁରୀ ସଦୃଶ ଆମ୍ଭର ଭ୍ରମ ଜାତ କଲା । ମୁହୂର୍ତ୍ତେ ମୁହୂର୍ତ୍ତେ ସେ ସୁବିପୁଳ ସୌଧପିଣ୍ଡ ସ୍ଥୁଳ ଏବଂ ସୂକ୍ଷ୍ମ ରୂପରେ ଦୃଶ୍ୟାଦୃଶ୍ୟ ହେଉଥିଲା । ଆମ୍ଭର ଚୈତନ୍ୟ ପୁରୁଷ ସ୍ୱପ୍ନ ଏବଂ ଜାଗରଣ ଭୂମିରେ ଅନାୟାସରେ ବିଚରଣ କରୁଥିଲେ । ଚୌର୍ଯ୍ୟାପରାଧ କରିଥିବାରୁ ଭୟ ଏବଂ ଶୀତଳ ଚନ୍ଦନରେ ପରିସ୍ନାତ ସେ ଅପୂର୍ବ ଦୃଶ୍ୟର ପୁଲକ ଆମ୍ଭଙ୍କୁ ଯୁଗପତ୍ କମ୍ପିତ କରୁଥିଲା । ଶରୀର ଜଡ଼ ପ୍ରାୟ, ମନ ଅମନ ପ୍ରାୟ, ଚେତନା ବିମୂଢ଼ ପ୍ରାୟ ହୋଇ ଆମ୍ଭେ ସ୍ତବ୍ଧପ୍ରାୟ କାଳପ୍ରବାହରେ ଭାସମାନ ଥିଲୁ । ଅନ୍ତରୀକ୍ଷଙ୍କ ଅନନ୍ତ ବିସ୍ତାର ଆମ୍ଭ ଭିତରେ ପ୍ରବେଶ କରିବାରୁ ବିପୁଳ ହିମାଦ୍ରି ପରି ସୁବିଶାଳ ନିଷ୍କମ୍ପ ଘନ ନିଃସ୍ୱନତା ଆମ୍ଭର ଅନ୍ତର ବାହାରେ ଆଚ୍ଛନ୍ନ କଲାପ୍ରାୟ ଅନୁଭବରେ ଆମ୍ଭେ ମୁହ୍ୟମାନ ଥିଲୁ । ଅନ୍ତସ୍ଥଳରେ ଉତ୍ତମ ରହସ୍ୟକୁ ପ୍ରତ୍ୟକ୍ଷ କରିବାର ଅଭିଳାଷ, ଦୃଷ୍ଟିର ଅଞ୍ଜଳିରେ କୋଟି ଲାବଣ୍ୟନିଧି ଧରି ରଖିବାର ସ୍ୱପ୍ନ କମ୍ପିତ ହେଉଥିଲା । ଅଦଭୂତେ ଆକାଶରେ ଚନ୍ଦ୍ରଦୀପ ନିମେଷ ମାତ୍ର ସକାଶେ ଲିଭିଗଲା ଏବଂ ଉଦ୍ଭାସିତ ହେଲା । ସାତ ପାବଛ ପାଖରେ ଆମ୍ଭ ବିଶ୍ୱାସକୁ ପ୍ରମାଣିତ କରି ମଣିମା ପ୍ରକଟିତ ହେଲେ । ଆସ୍ତେ ତେଣିକି ନିରବଶେଷ ବିଲୀନ ହୋଇଗଲୁ କି ନାହିଁ, ତେଣିକି ଚେତନା ସ୍ୱପ୍ନାୟିତ କି ଜାଗ୍ରତ;

ଦେଶକାଳର ନିର୍ଦ୍ଦିଷ୍ଟ ନିର୍ଣ୍ଣୟ ଅଛି ନା ନାହିଁ କିପରି କହିବା ?

"ତୁମେ କ'ଣ ଏ ଅପରାଧୀକୁ ଦଣ୍ଡ ଦେବାକୁ ସ୍ୱୟଂ ଆବିର୍ଭୂତ ହେଲ ଠାକୁର ? ଅତି ଉତ୍ତମ । ଅମୃତ ପାନ କଲା ବୋଲି ଏକଦା ଚକ୍ରରେ ଜଣଙ୍କର ମୂର୍ଦ୍ଧାପାତ କରିଥିଲ । ଛିଣ୍ଡିଗଲେ ସୁଦ୍ଧା ସେ ଅମୃତ ପିଇଛି ବୋଲି ଏବେ ମଧ ସାରା ଆକାଶରେ ଉଦ୍‌ଘୋଷିତ ହେଉଛି । ମୁଁ ଅପରାଧ ସ୍ୱୀକାର କରୁଛି ମଣିମା ! ଦଣ୍ଡାଦେଶକୁ ବି ଅପେକ୍ଷା କରୁଛି । ମୋର ଅମୃତ ପାନ ସରିଯାଇଛି । ଏଣିକୁ ତୁମ ଇଚ୍ଛା ! ...ତୁମେ ଏମିତି ଚିତ୍ର ପ୍ରତିମା ପରି ଠିଆ ରହିଲ ଯେ ! ଦଣ୍ଡିବା ଶକ୍ତି ଅଛି ବୋଲି କ'ଣ କ୍ଷମା ଆଚରଣ କରୁଛ ? ଅପରାଧକୁ ଅପରାଧ ବୋଲି ଘେନା କରୁନାହଁ । ଅହୋଭାଗ୍ୟ ! ମାନୁଷୀ ଢଙ୍ଗରେ ଅଳ୍ପ ହସି ଏମିତି ଚାହିଁବା ଭଙ୍ଗୀ ତୁମକୁ କି ସୁନ୍ଦର ମାନୁଛି ! ଗମ୍ଭୀରା ଭିତରେ ବଡ଼ ସିଂହାର ପରେ ପହୁଡ଼ ସଜ କରି ସେବକେ କୋଲପ ପକାଇଥିବେ । ବିଡ଼ିଆ ଲାଗି ହେଲାପରେ ପହୁଡ଼କୁ ବିଜେ ହେବା ଲୋକାଚାରକୁ ତୁମେ ସ୍ୱୀକାର କରିଥିବ । କିନ୍ତୁ ସେ ନିଷ୍ପଲକ ଆଖିରେ ନିଦ ଆସିବ କେମିତି ! ସେଥିପାଇଁ ବୋଧେ ଉଆସ ଅଗଣାକୁ ବାହାରି ଆସିଛ ।...

...ଶୁକ୍ଳପକ୍ଷର ଏ ଗ୍ରୀଷ୍ମନିଶା ଚନ୍ଦନ ବର୍ଷା କରୁଛି ! ଦ୍ୱାପର ଦ୍ୱାପର ଲାଗୁଛି ଏ ଶୀତଳତା ! କେଉଁଠୁ ହୁଏତ' ଧାରେ ମାତ୍ର ବଂଶୀସ୍ୱନ ଝରିଗଲେ ଏ ସମସ୍ତ ପଥର ତରଳି ବହିଯିବ ଯମୁନାରେ । ତୁମ ପାଖରେ କେହି ପହଞ୍ଚିଲେ ତ' ଏଇ ଅସୁବିଧା । ତୁମେ ତାର କଳା ହରଣ କରିନିଅ । ପୌରୁଷ ହରଣ କରିନିଅ । ସେ ତେଣିକି କେବଳ କାତର ପ୍ରାଣୀଟିଏ । ଆତୁର ଗୋପୀକାଟିଏ । ଖିଆଲି ରାଜପୁତ୍ର ପରି, ନୂଆମେଘ ମୁକୁଟ ଟେକି ଅନାଏ । ତୃଷାର୍ତ୍ତ ଚଞ୍ଚୁରେ ବିନ୍ଦୁଟିଏ ସିଞ୍ଚିଦେବା ତା'ର ମର୍ଜି ଉପର କଥା । ଏମିତି ବହୁକାଳ ତୁମଠାରୁ ବହୁଦୂରରେ ଅବହେଳାର ନିମ୍ନଭୂମିରେ ମୁଁ ବଞ୍ଚି ଆସିଛି । ତୁମ ଗରିଷ୍ଠ ଭକ୍ତବୃନ୍ଦଙ୍କ ପୃଥୁଳ ବ୍ୟୂହଭେଦି ତୁମ ପାଖେ ପହଞ୍ଚିବାର କୌଶଳ, ସାମର୍ଥ୍ୟ କିମ୍ବା ସାହସ ମୋ ପାଖରେ ନାହିଁ । ଏଣେ ତୁମକୁ ପାଇଗଲେ ଏକଲକ୍ଷ କଥା ଥରକେ କହି ପକାଇବାର ପ୍ରବଳ ଆତୁରତା ରହିଛି ଭିତରେ । ପୁଣି ମନେ ହେଉଛି ଅନ୍ତର୍ଯ୍ୟାମୀ ପୁରୁଷକୁ କ'ଣ କହିବି ? - କାହିଁକି କହିବି ? ଯଦି ବା କହେ କେଉଁ ବେଦୋତ୍ତୀର୍ଣ୍ଣ ଭାଷାରେ କହିଲେ ବେଦପୁରୁଷଙ୍କ ଶ୍ରୁତିଗୋଚର ହେବ ? ଭିତରେ ବାହାରେ ଘୋଟି ରହିଥିବା ଆକାଶକୁ କ'ଣ ସମ୍ବୋଧନ କରାଯାଇପାରେ ? ସେ ଚାହିଁଲେ

ହୁଏତ' କରାଯାଇପାରେ । ଯଦି ସେ ମାନୁଷୀ ତନୁ ଆଶ୍ରିତ ହୁଅନ୍ତି, ଯଦି ଇଙ୍ଗିତ କରନ୍ତି ସଖାବୋଲି, କାନ୍ଧରେ ହାତ ପକାଇ ସ୍ମିତମୁଖରେ ନାଁ ଧରି ଡାକିବାକୁ ପ୍ରବର୍ତ୍ତାନ୍ତି; 'ଆସ ଏ ଜହ୍ନରାତିରେ ସାଙ୍ଗ ହୋଇ ବୁଲିବା' କହି ହାତ ଧରି ଟାଣି ନିଅନ୍ତି, କାହାର ଏମିତି ଧୈର୍ଯ୍ୟ ଅଛି ନାହିଁ କରିଦେବ !

ତୁମେ ଏଭଳି ସୌଭାଗ୍ୟର ସୁଯୋଗ ଦେବାମାତ୍ରେ କିପରି ମୋ ସମଗ୍ର ସତ୍ତାର ବିଭିନ୍ନ ଭୂମିରୁ ଅଜସ୍ର ଆବେଦନ ସ୍ଫୁରିତ ହେଉଛି, ତୁମେ କ'ଣ ତାହା ଅନୁଭବ କରିପାରୁଛ ? ଯେଉଁ ଟିକକ ମନରେ ଧାରଣ କରି ବଚନରେ ପ୍ରକାଶ କରୁଛି ତାହା ସେ ସାମୂହିକ ବକ୍ତବ୍ୟର ଶତାଂଶ ସୁଦ୍ଧା ନୁହେଁ । ...ଅଦ୍ଭୁତ ଭାବରେ ମୁଁ କେବଳ ଜାଣି ପାରୁଛି ଯେ ଦେହ ପ୍ରାଣ ମନର ପ୍ରତିଟି କଣିକା ତା' ନିଜ ଢଙ୍ଗରେ ମୁଖର । ମୁଁ ସେ ସବୁ ଭାଷା ବୁଝିବାକୁ ଅକ୍ଷମ । ସହସ୍ରେ ସ୍ୱରର କୋଳାହଳ ଭିତରେ ମାତ୍ର ଗୋଟିଏ ଧ୍ୱନି ଗୁଞ୍ଜରୁଛି । ମନରେ ଶବ୍ଦର ଉଦୟ ହେବା ମାତ୍ରେ ସୂକ୍ଷ୍ମ ଧ୍ୱନିରେ ତାହା ଉଚ୍ଚାରିତ ହୋଇଯାଉଛି ଏବଂ ସେହି ମନୋଭୂମିରୁ ହିଁ ଶବ୍ଦରୂପୀ ପକ୍ଷୀମାନେ ତୁମ ଡାଳକୁ ଉଡ଼ି ଯାଉଛନ୍ତି ।

ଅଭିଯୋଗର ସ୍ୱର କହୁଛି ! "ମୁଁ ନିଜ ଇଚ୍ଛାରେ ସଂସାରକୁ ଆସି ନାହିଁ । ମୋ ଆସିବାର ଅନନ୍ତକାଳ ପୂର୍ବରୁ ଏ ସଂସାର ତା'ର ଯାବତୀୟ ରୂପଗୁଣ ନେଇ ବିଦ୍ୟମାନ । ସେ ଏକ ଆକୁଳାୟିତ ପ୍ରବାହ । ତା'ର ବି ଆୟତ୍ତ ନାହିଁ । ସେ ମଧ୍ୟ ନିଜ ଇଚ୍ଛାରେ ଚାଲି ନାହିଁ । ବହୁକାଳୁ ଆମେ ପୁରୁଷାନୁକ୍ରମେ ଶୁଣିଆସିଛୁ ଯେ କେବଳ ଜଣଙ୍କର ଇଚ୍ଛାରେ ହିଁ ଏ ପୃଥିବୀ ଆତଯାତ ହେଉଛି । ତାହାରି ପ୍ରଶାସନରେ ମହାଶୂନ୍ୟରେ ସୂର୍ଯ୍ୟଚନ୍ଦ୍ର ଧାରିତ ହୋଇ ରହିଛନ୍ତି । ଗଙ୍ଗାଦି ସରିତ୍‌ମାନେ ପ୍ରବାହିତ ହେଉଛନ୍ତି । ସେଇ ଜଣକୁ ଖୋଜିଖୋଜି ଏଯାଏଁ କେହି ତା' ସନ୍ଧାନ ପାଇ ନାହିଁ । ଅରଣ୍ୟକୁ ଖୋଜିଖୋଜି ଗଛମାନଙ୍କରେ ହାବୁଡ଼ିଛନ୍ତି । ଏକଦା କିନ୍ତୁ କୌଣସି ଏକ ଯୁଦ୍ଧ ପଡ଼ିଆରେ ଏମିତି ଏକାନ୍ତରେ ଜଣେ କହିଥିଲେ "ମୋ ଭିନ୍ନ ଏଠି ଆଉ କିଛି ନାହିଁ । ମଣିଷମାନଙ୍କ ଭିତରେ ପ୍ରଚ୍ଛନ୍ନ ସୂତ୍ର ପରି ଅସଂଖ୍ୟ ରୂପଗର୍ଭରେ ଏକମାତ୍ର ଗୂଢ଼ରହସ୍ୟ ହେଉଛି ମୁଁ ।" - ମୋର ସ୍ମରଣ ହେଉଛି ତୁମେହିଁ ସେସବୁ କଥା କହିଥିଲ । ତୁମ ଶ୍ରୋତା ତଥାପି ବିଶ୍ୱାସ କରିପାରି ନାହିଁ ବୋଲି ତାକୁ ଅତି ଅଦ୍ଭୁତ ରୂପ ଦେଖାଇ ବିସ୍ମୟବିମୂଢ଼ କରିଥିଲ । ବର୍ତ୍ତମାନ ସେ ସମସ୍ତ ପ୍ରୟୋଜନ ନାହିଁ ।

ତୁମେ ହିଁ ତୁମ ଇଚ୍ଛାରେ ଏସବୁ ଚାଳନ କରୁଛ ବୋଲି ମୁଁ ସ୍ୱୀକାର କରି ନେଉଛି । ତା ହେଲେ ତୁମେ ହିଁ ତ' ଗ୍ରାହକୁ ଗ୍ରାହ-ରୂପ ଦେଇଛ । ତୁମେ ହିଁ ଚାହିଁଛ ଗଜରାଜ ତା' କବଳରେ ପଡୁ । ମଜ୍ଜମାନ ଅବସ୍ଥାରେ ଶରଣାପନ୍ନ ହୋଇ ସ୍ତବ ପାଠକରୁ ଏବଂ ପଲକପାତ ହେବାମାତ୍ରେ ଗ୍ରାହର ମଥା ଛିଣ୍ଡିଯାଉ ! କଥା ରହିଥାଉ ଧରାଧାମରେ ଯେ ଏମନ୍ତ କେହି ଜଣେ ଅଛି ଯେ ଇଚ୍ଛାକଲେ ହିଁ ଅସମ୍ଭବ ସମ୍ଭବ ହୋଇ ପାରିବ । ପରିଣାମରେ ଗଜନିସ୍ତାରଣ ହୋଇଯାଏ । ତୁମର ବି ଯଶ ପ୍ରତିଷ୍ଠା ହୋଇଯାଏ । ...କିନ୍ତୁ ଏକାନ୍ତରେ କଥା ପଡ଼ିଛି ବୋଲି ପଚାରୁଛି । ସତ କହିଲ ଦେଖି ତୁମେ କ'ଣ ସବୁ ଗ୍ରାହକୁ ନିବାରଣ କରିଛ ନା ସବୁ ମୃଗୁଣୀକୁ ଉଦ୍ଧାର କରିଛ ? ଆମ ଜିଭରେ ହାଡ଼ କାହିଁ ତୁମର ସୁଦୀର୍ଘ ଅପଯଶର ତାଲିକା ବାଢ଼ିବାକୁ ? ସର୍ବମୟ କର୍ତ୍ତା ରୂପେ ସ୍ୱୀକୃତ ମହିମାଙ୍କୁ ଅପନିନ୍ଦିତ କରିବାର ଅଭିଳାଷ ଆମର ନାହିଁ । ଯୁଗଯୁଗ ଧରି ତୁମ ଉପରକୁ ଆଉଜି ରହିଥିବା ଆନୁଗତ୍ୟ ଖାତିର୍‌ରେ କହିପାରୁ ନାହୁଁ ଯେ ତୁମେ ସବୁ ଦୁଷ୍କୃତଙ୍କୁ ବିନାଶ କରିବାରେ ଅସମର୍ଥ କିମ୍ବା ଅନିଚ୍ଛୁକ । ତୁମେ ହୁଏତ' ପାରୁ ନାହଁ କିମ୍ବା ପାରିଲେ ବି ଇଚ୍ଛା କରୁନାହଁ ପ୍ରାଣୀର ମଙ୍ଗଳ ହେଉ, ସେ ଗ୍ରାହମୁକ୍ତ ହେଉ !...

...ଆଚ୍ଛା, କହିଲ ଦେଖି ତୁମେ କ'ଣ ସତରେ ଜୀବଯାତନା ବୁଝିଛ ? ତୁମେ ତ' ଅନ୍ୟଡାଳର ପକ୍ଷୀ । ମିଠା ଫଳ ଚାଖି ନାହଁ । କଷା ଫଳ ବି ଚାଖି ନାହଁ । କେବଳ ନିଷ୍ପଲକ ଚାହିଁ ରହିଲେ କ'ଣ ଅନୁଭବ ହୋଇଯାଏ ? ଜୀବଟି ବିଚରା ବେଦନାରେ ଛଟପଟ ହେଉଥାଏ । ସଂସାରରେ ବିଡ଼ମ୍ବିତ ହୋଇ ତୁମକୁ ଆତୁର ପ୍ରାର୍ଥନା କରୁଥାଏ । ତୁମେ ନିଷ୍କମ୍ପ ଆକାଶ ପରି ସବୁ ଜୀର୍ଣ୍ଣ କରିଯାଅ । ତୁମଠାରୁ ପ୍ରତିଧ୍ୱନି ବି ଆସେ ନାହିଁ । ତେବେ ତୁମକୁ ଆମେ ଡାକୁ କାହିଁକି ? ଏଇଥିପାଇଁ ଡାକୁ ଯେ ତୁମେ କାଳେ ଆମ ଗହଣକୁ ଓହ୍ଲେଇ ଆସି, ଆମରି ରୂପ ଧାରଣ କରି ଆମ ଦୁଃଖ ନିବାରଣ କରିବ ! ତୁମେ ବାରମ୍ବାର ସେମିତି ଆସିଛ ବୋଲି ଇତିହାସ କହୁଛି । ସତ୍ୟ, ତ୍ରେତା, ଦ୍ୱାପରରେ ଆସିଛ । କରୁଣାରେ ଆନତ ଜଳଦ ପରି ନଇଁ ଆସିଛ । କିନ୍ତୁ ଗୋଟାଏ ପକ୍ଷ ଏମିତି ଜହ୍ନରାତି ହେଲାପରେ ପୁଣିତ' ଅନ୍ଧାର ମାଡ଼ି ଆସିଛି । ତାକୁ ନିବାରଣ କରିବାକୁ ତୁମର ବ୍ୟବସ୍ଥା ନାହିଁ । ମନେ ହେଉଛି ତୁମେ ହିଁ ସ୍ୱୟଂ ସେଇ ଅନ୍ଧାର । ଧାରା ଶ୍ରାବଣରେ ମେଘ ଘୋଟି ରହିଥିଲା ବେଳେ ତୁମ ବଂଶୀଧ୍ୱନିରେ ଆମେ ବାହାରି ଆସିଛୁ । ରାକା ରଜନୀରେ ଡାକିଛ, ଆମେ ଆସିଛୁ ।

କିନ୍ତୁ ଗୋଟାଏ ଯୁଗଧରି ଆମେ ଯମୁନାରେ ଗୋପକୂଳରେ ଠିଆହୋଇ ରହିଛୁ ତୁମ ପ୍ରତୀକ୍ଷାରେ । ତୁମେ ଆସିନାହଁ । ତୁମ ଆସିବା ଯିବା ତୁମ ମର୍ଜି ଉପର କଥା । ଆମ ଦୁଃଖ, ଦୈନ୍ୟ, ଯାତନା ମଧ୍ଯ ତୁମର ହିଁ ମର୍ଜି ଉପର କଥା ।...

ତୁମେ ଜାଣ ବ୍ୟାଧିର ପୀଡ଼ା କ'ଣ ? ବାର୍ଦ୍ଧକ୍ୟର ଅସହାୟତା କ'ଣ ? ତୁମେ ତ କେବେ ବୃଦ୍ଧ ହୋଇଛ ବୋଲି କେହି ଜାଣନ୍ତି ନାହିଁ ! ନିତ୍ୟନୂତନ ବୃଦ୍ଧ ହେବେ କିପରି ? ସେହିପରି ସକଳ ବ୍ୟାଧିର ମୂଳଉସ୍ତ ସ୍ୱୟଂ କିପରି ଆକ୍ରାନ୍ତ ହୋଇପାରିବେ ? ଏତେବର୍ଷ ଧରି ବଣରେ ବୁଲିଛ ! ଗଛମୂଳେ ବିତିଯାଇଛି ଅଶ୍ରୁର ଶ୍ରାବଣ ? ଅନାହାର କ୍ଳାନ୍ତି ଦିନେ ହେଲେ ତୁମକୁ ବ୍ୟାଧିଗ୍ରସ୍ତ କରି ନାହିଁ । ତମେ ଖାଲି ମଣିଷ ଶରୀରଟିକୁ ଆଳ କରି ନେଇଛ । ତା'ର ଧର୍ମ ସ୍ୱୀକାର କରିନାହିଁ ।

ହଁ ମୁଁ ଜାଣିପାରୁଛି ଯେ ଗ୍ରୀଷ୍ମ ଅସହ୍ୟ ହେଲେ ତୁମେ ଚନ୍ଦନ ଯାତ ଭିଆଣ କର । ଏ ପ୍ରକାର ଜହ୍ନ ରାତିରେ ଉଆସ ଅଗଣାରେ ବିଚରଣ କର । ସୁନା କୂଅ ପାଣିରେ ଥରେ ଗାଧୋଇଲା ପରେ ଅନବସର ଜ୍ୱର ଭୋଗକର । ଶରୀର ଧର୍ମ ସ୍ୱୀକାର କଲ ବୋଲି କ'ଣ ଏ ପ୍ରମାଣ ? ତୁମେ ହୁଏତ ଚାହିଁଲ ଯେ ତୁମକୁ ଆଳ କରି ଅସଂଖ୍ୟ ନରନାରୀ ନରେନ୍ଦ୍ର କୂଳରେ ଶୀତଳ ହୁଅନ୍ତୁ । ହୁଏତ ମୋ ପାଇଁ ତୁମେ ଆଜି ଅଗଣାକୁ ବାହାରି ଆସିଛ ! ନାଁ ନାଁ ମୁଁ କ'ଣ ଚାହୁଁଛି ତୁମେ ସେ ଗୁମୁଟ ଭିତରକୁ ଫେରିଯାଅ ? କିଏ କ'ଣ ଚାହେଁ ତା ଆତ୍ମାପୁରୁଷ ସ୍ୱସ୍ଥାନକୁ ବିଜେ ହୋଇ ଯାଆନ୍ତୁ ? ବରଂ ଚାଲ ଠାକୁରାଣୀଙ୍କ ଉଆସ ବାଟେ ନିଶାତଳ ଆଡ଼େ ଯିବା । ସେଇଠି ପବନ ଦେବ ତୁମର ବ୍ୟଜନ ସେବା କରିବାକୁ ସବୁବେଳେ ଖଟିଥାଆନ୍ତି । ସେ ଆଡ଼େ ଯିବ ନାହିଁ ? ହଉ ନ ହେଲା ନାହିଁ । ଏଇ ଉତ୍ତର ଅଗଣା ସବୁଠୁ ଭଲ । ଜହ୍ନ ଆଲୁଅ ଏତେ ନିର୍ମଳ ଏବଂ ଅବାଧ ଆଉ କେଉଁଠି ନାହିଁ । ଠିକ୍ ଅଛି ମୁଁ ବରଂ କିଛି ସମୟ ନିରବ ରହୁଛି । ପାଖରେ ପାଇଲି ବୋଲି ଅଧିକାରରେ ସବୁ ଦୁଃଖ ଅଭିମାନ ଅଜାଡ଼ି ଦେବାର ଅପରାଧ ଆଉ କରିବି ନାହିଁ ।

ଚନ୍ଦ୍ର ମଧ୍ୟାକାଶରୁ ଲଇଁ ଆସିଲେଣି । ତୁମ ଉଆସ ଛାଇରେ ଠିଆ ହେଲେ ଭାରି ଭଲ ଲାଗୁଛି । ଦମ୍ଭ ଲାଗୁଛି । ଲାଗୁଛି ଯେ ଏଇଟା ଆମ ଖାଉନ୍ଦଙ୍କ ଉଆସ । ତୁମେ କିନ୍ତୁ ସେଇ ଆଲୁଅରେ ଥାଅ । ଘନୀଭୂତ ଆକାଶ ପରି ତୁମର ଏ ରୂପ ଏହିପରି ଦୁର୍ବାର ଲୋଭନୀୟ ଦିଶୁଥାଉ । ଯଦି ଇଚ୍ଛାକର ତା'ହେଲେ ଅଦୃଶ୍ୟ

ବେତାଳମାନେ ରତ୍ନ ସିଂହାସନ ଏଠିକି ଟେକି ଆଣିବେ । ସିଂହାସନରେ ବସି ରହିବା କିଛି କମ୍ ଦାୟିତ୍ୱ ନୁହେଁ । ବର୍ଷକେ ଥରେ ମାତ୍ର ଓହ୍ଲେଇବାର ସୁଯୋଗ ମିଳେ, ସେ ପୁଣି ଏମିତି ତୁମୁଳ କୋଳାହଳ ଠେଲା ପେଲାର ଗୋଳିଆ ପାଣିରେ ଭରପୂର ନଈ ଭିତରେ ଯେ ବାହାରେ ଟିକିଏ ଖୋଲାରେ ବୁଲି ଆସିବା ସୁଖ ସେଥିରେ ନାହିଁ । ଲକ୍ଷେ ଭକ୍ତ, ଲକ୍ଷେ ଗୁହାରିଆ ! ତା ଭିତରେ ଏମିତି ବି ସାଧୁପୁରୁଷ ଥାଆନ୍ତି ଯେ ତୁମକୁ ଉଭା ହେବାର ଦେଖିଦେଲେ ହିଁ ବିହ୍ୱଳ ହୋଇଯାଆନ୍ତି । ସେମାନଙ୍କର କିଛି ହେଲେ ଗୁହାରି କରିବାର ନ ଥାଏ । ସେମାନେ ଆପ୍ତକାମ ନୁହନ୍ତି କିନ୍ତୁ ତାଙ୍କ ଢଙ୍ଗ ହେଲା ଯେ ମାଲିକ ଖୁସି ହେଲେ ସେ ଖୁସି । ସେଇ କଥାହିଁ ହେଉ ଠାକୁର ! ତୁମ ସୃଷ୍ଟି ତୁମେ କେମିତି ଚଳାଉଛ ଚଳାଅ । ତୁମ ଭକ୍ତକୁଳ ତୁମ ଯଶ ଗାଇଗାଇ ଅନ୍ନ ବସ୍ତ୍ର କଷ୍ଟରେ ମରୁ ଥାଆନ୍ତୁ । ତାଙ୍କଠାରୁ ପ୍ରାର୍ଥନା ଶୁଣିବାକୁ ତାଙ୍କୁ ଆହରହ ହାତୀ ପାହୁଲ ତଳେ ଚକଟାଉଥାଅ । ଦୁର୍ଜନ ଖଳକାମୀମାନେ ଧନଜନ ଗୋପଲକ୍ଷ୍ମୀରେ ସୌଭାଗ୍ୟଶାଳୀ ସାଧବ ହୋଇ ଜୀବନ ଉପଭୋଗ କରୁଥାଆନ୍ତୁ । ଏ ବ୍ୟବସ୍ଥା ଯଦି ତୁମ ମନକୁ ପାଉଛି ତେବେ ସେଥିରେ କାହାର କ'ଣ କହିବାକୁ ଅଛି ? ନିୟନ୍ତା ପୁରଷକୁ କ'ଣ ଉତ୍ତର ଅଛି ? ଆସ ବରଂ ଅନ୍ୟ କଥା ହେବା ।

କ'ଣ ମନ ଦୁଃଖ କଲ କି ? ତୁମ ମୁହଁ ଶୁଖିଲା ଦେଖାଗଲେ ଆମ ପଦ୍ମ ପୋଖରୀରୁ ସବୁ ପାଖୁଡ଼ା ମଉଳିଯାଏ । ଆତ୍ମା ସଙ୍କୁଚିତ ହୋଇଯାଏ । ତୁମେ ମାଲିକପଣେ ବସିଛ ବୋଲି ସିନା ଦିପଦ ଝିଙ୍ଗାସ ଆମ ତୁଣ୍ଡରୁ ବାହାରି ଯାଉଛି । କ'ଣ ଆଉ କରିବୁ କହୁନ ? କାହା ଆଗରେ କହିବୁ ମନ ବନସ୍ତରେ ନିଆଁ ଲାଗିଯିବା କଥା ? ତୁମେ ସେଥିରେ ଏମିତି ଝାଉଁଳି ପଡ଼ିବ ବୋଲି କ'ଣ ଆମେ ଜାଣିଛୁ ? ହଉ, ହେଇ କାନ ମୋଡ଼ି ହେଉଛି ଆଉ ଯଦି କେବେ ଭୁଲରେ ହେଲେ ତୁମକୁ ମୋ' ଦୁଃଖ ଜଣାଇଛି ତ କହିବ । ବରଂ ତୁମ ଦୁଃଖ କ'ଣ ମୁଁ ବୁଝି ପାରୁଛି...

ଅଜ୍ଞାତ ଶବରପଲ୍ଲୀରୁ ଯେଉଁଦିନ ଏ ଉଆସକୁ ଉଠି ଆସିଲ, ଆଜ୍ଞାକାରୀ ସେବକମାନେ ଖଟିଲେ, ମୁଣ୍ଡରୁ ମୁକୁଟ ଓହ୍ଲେଇଦେଇ ଗଜପତି ସମ୍ରାଟ ସାଷ୍ଟାଙ୍ଗ ପ୍ରଣିପାତ ହେଲା, ସେଦିନ ଜାଣି ତୁମ ଦୁଃଖର ସୂତ୍ରପାତ ହେଲା । ମହାକାଶ ଘଟାକାଶ ହେବାର ଦୁଃଖ । ଦେଉଳ ଗମ୍ଭୀରା ଏଡ଼ିକି ଅନ୍ଧାର, ଏମିତି ନିବୁଜ ଗୁନ୍ଧି ହୋଇ ରହିଛି ବୋଲି ତୁମେ କ'ଣ ଜାଣିଥିଲ ? ସେଠିକି ପବନ ଯାଏନାହିଁ କି ଆଲୁଅ ଯାଏ

ନାହିଁ । କଂସର ବନ୍ଦୀଶାଳ ପ୍ରାୟ ଏଇଭଳି ହେଇଥିବ ନା କ'ଣ । ବିହୁଡ଼ି ନ ଜାଳିଲେ ତୁମର ମୁଖ ଦର୍ଶନ ସମ୍ଭବ ନୁହେଁ । ଭୋଗ ଭୁଞ୍ଜାଇବା ପାଇଁ ଏମିତି ଆଜ୍ଞାକାରୀ ଭୃତ୍ୟ ଲାଗି ରହିଛନ୍ତି ଯେ ଟିକିଏ ନିରୋଳାରେ ଗଣ୍ଡିଏ ମଣୋହିଁ କରିବା ମନା । ତୁମକୁ ଯାତରା କଣ୍ଢେଇ କରି ସାରିଛନ୍ତି । କଥା କଥାରେ ବେଶ ବଦଳ, ରୂପ ବଦଳ କରି ଚାଲିଛନ୍ତି । ସମସ୍ତଙ୍କ ଆଗରେ ନିରାବରଣ କରି ପୁଣି ଲୁଗା ପିନ୍ଧାଉଛନ୍ତି । ତୁମେ କ'ଣ ପାଟ ଛିଟ ପାଇଁ କଟାଳ କରିଛ ନା ପଦ୍ମମଣ୍ଡଣିକୁ ଅଡ଼ି ବସିଛ ? ତୁମେ ତ ତୁମ ରୂପର ଆଭାସରେ ସ୍ଥିର ଚାହାଣିରେ ଏଠି ନ ଥିଲା ପରି ଜଣାଯାଅ । ଯେଉଁ ରୂପକୁ ତୁମେ ସ୍ୱୀକାର କରିଛ ବୋଲି ଆମେ ଭାବୁ ତାହା ଖୋଳଟିଏ କେବଳ । ସେଥିରେ କାଳୀୟ ଦଳନ ହେଲେ କେତେ, ନାଗା ପଠାଣ ହେଲେ କେତେ ? ତୁମେ ତ ହାତଗୋଡ଼ ଓହ୍ଲେଇ ଦେଇ ଅଚଳ ସନାତନ ରୂପରେ ବସିଥାଅ, କିନ୍ତୁ ତାଙ୍କ କାମ ଚଳେନାହିଁ ବୋଲି ମହଣ ମହଣ ଭାର ସୁନାରେ ହାତ ପାଦ ଖଞ୍ଜି ଦିଅନ୍ତି, ଚକ୍ରଟିଏ ବା ଧନୁଟିଏ ଧରାଇ ଦିଅନ୍ତି । ସେହି ରୂପେ ପ୍ରାର୍ଥନା କରିବା ସହଜ । କିନ୍ତୁ ଏ ବେଶ ପଛରେ ତୁମେ ପୂର୍ବଭଳି ନିର୍ଲିପ୍ତ ରହିଥାଅ । କାନ ନାହିଁ ଶୁଣିବାକୁ, ଆଖିନାହିଁ ଦେଖିବାକୁ, କ'ଣ କରୁଛନ୍ତି କରନ୍ତୁ ସେମାନେ । ପର୍ବ ପର୍ବାଣୀ ଯାତ ମହୋତ୍ସବ କରନ୍ତୁ ଅଥବା ବେପାର ବଣିଜ କରନ୍ତୁ, ଅନାଚାର ବ୍ୟଭିଚାର କରନ୍ତୁ । ମନେହୁଏ ସେଇମାନଙ୍କର ହିଁ ଉନ୍ମତ୍ତ ରୂପ ଦେଖି ତୁମେ ସ୍ୱୟଂ ଦାରୁଭୂତ ହୋଇ ଯାଇଛ, କାଠ ପାଲଟି ଯାଇଛ । ଗଜପତି ଥାଟ ମାଡ଼ିଯାଏ । ଲୁଣ୍ଠିତ ସୁବର୍ଣ୍ଣରେ ରତ୍ନଥାଳୀ ଗଢ଼ାହୁଏ, ସୁନାମୁକୁଟ ଗଢ଼ାହୁଏ । ତୁମେ ହୁଏତ ଦେଖି ତାଟକା ହୋଇଯାଅ । ତୁମ ଆଖିରୁ ପଲକ ଲିଭିଯାଏ । ଦୃଷ୍ଟି ଲିଭିଯାଏ । ତୁମେ ଈଶ୍ୱର ଆସି ଉଭା ହୋଇଥିଲ । ଐଶ୍ୱର୍ଯ୍ୟ କହିଲେ କ'ଣ ଏମାନେ ଏଇ ଧାତୁ ପଥରର ସ୍ତୂପକୁ ବୁଝନ୍ତି ? କି ଦୁଃଖ ସତେ, ମଣିଷ ପାଇଁ ନୁହେଁ ଈଶ୍ୱର ପାଇଁ ?

ଆମେ ବାଲି ଉପରେ ବସି ସମୁଦ୍ରକୁ ଚାହିଁଲା ପରି ତୁମେ ସେ ଗମ୍ଭୀରା ଭିତରୁ ଦର୍ଶକ ସମୁଦ୍ରର ଢେଉ ଗଣୁଥାଅ । ଥାକ ଥାକ ହୋଇ ପଣ୍ଡା-ମଣ୍ଡିତ ଯାତ୍ରୀଦଳ ଆସି ପହଞ୍ଚନ୍ତି । ସମସ୍ତଙ୍କର ଦେହ ମନ ପ୍ରାଣର ଉତ୍ତାପ ବାମ୍ଫ ହୋଇ ଜଗମୋହନ ସାରା ତାତିଯାଏ । ସବୁ ଅଗ୍ନିର ଶିଖା, ସବୁ ଅଙ୍ଗାରର ଧାସ ତୁମ ଉପରକୁ ମାଡ଼ି ଆସେ । ଅହରହ ସେ ଜାଞ୍ଜି ବାଜି ବାଜି ତୁମ ଶ୍ରୀଅଙ୍ଗ ଏପରି ବିବର୍ଣ୍ଣ ହୋଇଯାଇଛି କି ?

ସେଥିପାଇଁ ଦିନକୁ ତିନିଥର ଚନ୍ଦନ ସ୍ନାନ କରିବାକୁ ତୁମର ମନ ହୁଏକି ? ନରେନ୍ଦ୍ର ପୋଖରୀର ଚାରିଆଡ଼େ ସେଇ ଜୀବ ଯାତନାର ଅଗ୍ନିଶିଖା ଜଳୁଥିବାର ଦେଖି ଏ ଜହ୍ନ ରାତିରେ କିଞ୍ଚିତ ଶୀତଳ ହେବାକୁ ଅଗଣାକୁ ବାହାରି ଆସିଛ କି ?

କେଡ଼େ ଦୁଃଖରେ ସତେ ତୁମେ ଏଠି ବନ୍ଧା ପଡ଼ିଛ ? ପୁର ପୁର ପଥର ବାଡ଼, ବଜ୍ର କବାଟ ପଛକୁ ବଜ୍ର କବାଟ ! ଛିଦ୍ରଟିଏ ନାହିଁ ଦେବତା ସୁଦ୍ଧା ଗଳିଯିବାକୁ । ଜୀବ ଶରୀରର ତ୍ୱକ୍‌ମାଂସରୁଧିରାସ୍ଥି ଅନ୍ଧାର ଗୁମୁଟ ଭିତରେ ଯେ ସୂକ୍ଷ୍ମ ରହସ୍ୟ ରୂପେ ରହିଛି ବୋଲି ପ୍ରତିଷ୍ଠା ଲାଭ କରିଛି, ସେଇ ଅଭ୍ୟାସରେ ସେ ହୁଏତ ଏ ପଥର ଉଆସ ଭିତରେ ରହିପାରେ । ଅନ୍ୟଥା ଏହା ସମ୍ଭବ ନୁହେଁ । କିନ୍ତୁ କାହିଁକି ତୁମେ ଏ ବନ୍ଧନକୁ ସ୍ୱୀକାର କରିଛ ? ଯଦି ଦୁଃଖ ବିମୋଚନ କରିବାର ଯୋଜନା ତୁମର ନାହିଁ ନିଜେ କାହିଁକି ଏଇଠି ଏ ଦୁଃସହ କାରାବରଣ କରିଛ ? ତୁମକୁ ଅନ୍ନଥାଳି ଦେଖାଇ ଦେଇ ସେମାନେ ଭୁଞ୍ଜି ଯାଆନ୍ତି । ମାଳଟିଏ ଲଗାଇଦେଇ ଲୁଣ୍ଠନ କରନ୍ତି । ତୁମେ ତାଙ୍କ ବୃତ୍ତିରେ ଅବଲମ୍ବ । ତୁମେ ଏକ ସାମଗ୍ରୀ । କାଳେ ତୁମେ ଖସି ଚାଲିଯାଇପାର ବୋଲି ତୁମକୁ ସେମାନେ ଏପରି ଅଥର୍ବ କରି ଦେଇଥିବା ବିଚିତ୍ର ନୁହେଁ । ବୃତ୍ତି ପାଇଁ ଯେଉଁମାନେ ଅବୋଧ ଶିଶୁକୁ ଅନ୍ଧ, ପଙ୍ଗୁ କରିଦେଇ ପାରନ୍ତି, କାଳେ ସେ କାହାକୁ କ'ଣ କହିଦେବ ବୋଲି ଜିଭ କାଟି ଦିଅନ୍ତି, ଶୁଆ ଉଡ଼ିଯିବ ବୋଲି ତା ଡେଣା ଯୋଡ଼ିକ କତୁରି ଦିଅନ୍ତି, ସେମାନେ ତାଙ୍କ ଭକ୍ତି-ବୃତ୍ତି-ସାମଗ୍ରୀକୁ ଏପରି ନାରଖାର କରି ଦେବାରେ ବିଚିତ୍ରତା କ'ଣ ଅଛି ? ଆହା ସତେ ତୁମେ ଚାହିଁଲେ ସୁଦ୍ଧା ପାଟି ଖୋଲି କିଛି କହି ପାରିବ ନାହିଁ । ସେମାନେ ଜଉମୁଦ ଦେଇ ଅଧରୋଷ୍ଠକୁ ଅବରୁଦ୍ଧ କରି ଦେଇଛନ୍ତି । ବେଳେ ବେଳେ ହୁଏତ ସେ ବିସ୍ଫାରିତ ଚକାଡ଼ୋଳା ର ଫୁଟିଲା ପଦ୍ମରୁ ଶିଶିରପାତ ହେଲାପରି ସମସ୍ତଙ୍କ ଅଲକ୍ଷରେ ଅଶ୍ରୁଧାର ଝରି ପଡୁଥିବ । ସ୍ୱେଦାକ୍ତ ହେଉଥିବ କାରାକକ୍ଷ ଭିତରେ ସମଗ୍ର ବିଗ୍ରହ ! ଆହା ପ୍ରଭୁ ! ଏଠି ତ ପଣ୍ଡା ପଢ଼ିହାରୀ ସେବକ ସୂପକାର କେହି ନାହାନ୍ତି; ମୋତେ ଯଦି ବାହନ ରୂପେ ସ୍ୱୀକାର କରନ୍ତ ଜଗନ୍ନାଥ, ମୁଁ କାନ୍ଧରେ ବସାଇ କିଛି କାଳ ଏ ଅଗଣାରେ ବୁଲାଇ ଆଣନ୍ତି । ଯଦି ରାଜି ହୁଅନ୍ତ, ଦିଖଣ୍ଡ ବିଡ଼ିଆ ଭୁଞ୍ଜାଇବାକୁ ମନ ହେଉଛି । ମୁଁ ଜଉମୁଦ ଭାଙ୍ଗିଦେଲେ ତୁମ ଅଧରୋଷ୍ଠ ବିଭାଜିତ ହୁଅନ୍ତା । ସେ ଅପରାଧ ପାଇଁ ମୋତେ ରାତି ପାହିଲେ ଯଦି ଶୂଳିରେ ଚଢ଼ିବାକୁ ହୁଏ ମୋର ଆପତ୍ତି ନାହିଁ । ଓଦା ଗାମୁଛାରେ ବିଗ୍ରହ ପୋଛି

ଦିଅନ୍ତି । ତୁମେ ଲୀଳାୟିତ ହୁଅ ଠାକୁର, ବାଗ୍‌ମୟ ହୁଅ । ଏମିତି ନିଶ୍ଚଳ ନିଷ୍ପଳକ ଆଖିରେ ଅସହାୟ ଚାହିଁ ରହନାହିଁ । ବରଂ ନେଇଯାଅ ମୋର ଅବୟବ, ନେଇଯାଅ ମୋର ଚକ୍ଷୁ ଜିହ୍ୱା ସ୍ପନ୍ଦନ । ମୋତେ ଜଡ଼ ନିଶ୍ଚିହ୍ନ କରିଦିଅ ଠାକୁର, ତୁମର ଅଗାଧ ଅମାପ ଅନ୍ଧାରପରି ଅପ୍ରକାଶ୍ୟ ଦୁଃଖ ମୋର ଅସହ୍ୟ । ତୁମେ ଆମରି ଭଳି ରୂପ ପରିଗ୍ରହ କଲେ, ଆମରି ଦୁଃଖରେ ପରିଶିଳିତ ହେଲେ, ଆମେ ତୁମ ଉପରୁ ସମସ୍ତ ଅଭିଯୋଗ ପ୍ରତ୍ୟାହାର କରିନେବୁ । ତୁମକୁ ସଖା ସୋଦର ରୂପେ ପାଇବାର ସୁଯୋଗ ଦିଅ । ଆମ ସହିତ ନଈ କୂଳରେ ଦହିଭାତ ଖାଇବାକୁ ରାଜି ହୋଇଯାଅ । ତୁମେ ଗୋବର୍ଦ୍ଧନ ଧାରଣ କଲେ ଆମେ ଲଗୁଡ଼ ଲଗାଇ ତାକୁ ଟେକି ଧରିବୁ । ତୁମେ ଏମିତି ଗମ୍ଭୀରା ଭିତରେ ଏତେ ନିସ୍ପୃହ, ନିସ୍ପନ୍ଦ, ଅନନ୍ତ ଯାତନାରେ ମଗ୍ନ ବୁଡ଼ାଇଲା ପରି ଆମକୁ ଆଉ ଚାହଁନାହିଁ । ଆମ ଦୁଃଖକୁ ଏପରି ଶତଗୁଣିତ, ଦୂରନ୍ତ କର ନାହିଁ । ହେ ମଣିଷଙ୍କ ଠାକୁର, ତୁମେ ବରଂ ମଣିଷ ହୋଇଯାଅ ।

□□□

ନମୋ ନିଶ୍ଛିଦ୍ରଲିଙ୍ଗୀୟ
　　　　ନମୋ ପ୍ରଣବରୂପିଣେ ।
ଯାତ୍ରାୟାଃ ଲୀଳାୟତୀବ
　　　　ନ ଏକଦେକଂ ବ୍ରହ୍ମଣେ ॥
ଜାଗ୍ରତୋ ନିର୍ନିମେଷାୟ
　　　　ଜଗତଃ ସାକ୍ଷୀରୂପିଣେ ।
ଅନନ୍ତ ଶୋଭମାନାୟ
　　　　ଅଖଣ୍ଡାନନ୍ଦ ହେତବେ ॥

⊙

ତୁମକୁ ଭରସା କରିବା ଯାହା, ଆକାଶକୁ ଲମ୍ଫ ଦେବା ତାହା । ଆକାଶ ଅଛି ଅଛି ପରି ଦିଶୁଥାଏ, କେବେହେଲେ ଅନନ୍ତ କାଳ ଅବଧି ଅନନ୍ତ ବ୍ରହ୍ମାଣ୍ଡରେ କେହି ତାକୁ ଟିପ ମାରି ଛୁଇଁ ନାହିଁ କି କହି ନାହିଁ; "ହେଇ ଦେଖ, ନଗ୍ର ଜନେ, ମୁଁ ତାକୁ ପାଇଛି !" କିନ୍ତୁ ଯେତେ ଭ୍ରମିଲେ ମଧ ସେ ତା' ଉପରେ, ତଳେ ଚତୁର୍ଦ୍ଦିଗରେ ପ୍ରସରି ରହିଛି । ତାକୁ ଛଳୁଛି ଚିରକାଳ ତାର ମାୟା-ଯନ୍ତ୍ରିତ ଅଛି-ନାହିଁ ଭାବରେ ! - ତୁମେ କ'ଣ ସେଇଆ ?

ତୁମେ କ'ଣ ପାଷାଣର ଗର୍ଭ ? ତୁମ ଦ୍ୱାର ଦେଶରେ ଠିଆ ହୋଇ ପରମ ବିଶ୍ୱାସରେ ଅସୁମାରି ଦୁଃଖ ଜଣାଇଲା ପରେ ସେହି ସ୍ୱର ହିଁ ପ୍ରତିଧ୍ୱନିତ ହୋଇ ଫେରି ଆସୁଛି ? ବିଡ଼ମ୍ବିତ ଆର୍ତ୍ତଜନମାନେ ଭାବି ନେଉଛନ୍ତି ଯେ ଗିରିଗର୍ଭରୁ ଦେବତା ଉତ୍ତର ଦେଉଛି ମନ୍ଦ୍ର ନାଦରେ । ଏମିତି ଛଳିବା କ'ଣ ତୁମ ଧର୍ମ ?

ଗୁଡ଼ିଏ ଆଶ୍ରିତ ଗୋପୀଜନ ପାଇଲେ ହିଁ ସେମାନଙ୍କୁ ଛଳିବାକୁ ତୁମକୁ ସୁଯୋଗ ମିଳିଯାଏ । ଅବିଶ୍ୱାସୀ, ଅନାଶ୍ରିତ ଲୋକ ତୁମକୁ ପଛ କରି ଚାଲିଥାନ୍ତି । ତୁମେ ତାଙ୍କ ପଛେ ପଛେ ଚାଲିଥାଅ । ପାଦର ନୂପୁର ଧ୍ୱନି ପ୍ରଚାର କରୁଥାଏ ତୁମେ ଅଛ ବୋଲି । ସେମାନଙ୍କ ବାଟ ସାରା ଫୁଲ ଫୁଟୁଥାଏ । ତୁମେ ହିଁ ସେମିତି ଫୁଟାଉଥାଅ । ତାଙ୍କ ମନ କିଣିବା ପାଇଁ ପ୍ରଲୁବ୍ଧ କରୁଥାଅ । ସେଥିପାଇଁ କେତେବେଳେ ନାଉରୀ ତ' କେତେବେଳେ କାଚରା ହେବାରେ ତୁମର ଆପତ୍ତି ନାହିଁ । ତେଣିକି ସବୁ ଆଡ଼ କରିଦେଇ ତୁମକୁ ଦୁଇବାହୁ ଟେକି ଡାକିଲେ ସୁଦ୍ଧା ଶୁଣ ନାହିଁ । ପଛ କରିଦେଇ ଚାଲିଯାଅ । ଭଣ୍ଡି ଦେଇ ଯାଅ । ତା' ଜୀବନ ସାରା ତେଣିକି ଅଗ୍ନିମୟ; ତା'ପାଇଁ ସାରା ରାସ୍ତା କେବଳ କଣ୍ଟାବଣ !

ଦୀନ-ବାନ୍ଧବ ବୋଲି ଡିଣ୍ଡିମ ବାଜୁଛି । ଅଥଚ ଦୁଃଖୀ ଜଣାଇଲେ ଦୁଃଖ ନ

ଶୁଣ ହୋଇ ବିମୁଖ । ସେଥିରେ ପୁଣି ଅଦ୍ଭୁତ ଯୁକ୍ତି । ତାକୁ କୁଆଡ଼େ ସେ ଦୁଃଖୀ ବୋଲି ଯଥେଷ୍ଟ ପ୍ରମାଣ ଦେବାକୁ ପଡ଼ିବ, ନ ହେଲେ ତୁମ ବାନ୍ଧବ-ପଣିଆର ପ୍ରମାଣ ମିଳିପାରିବ ନାହିଁ । ଆରେ, ସେ ପରା ଟାଙ୍ଗରା ଭୂଇଁରେ ବନ୍ଧା ପଡ଼ିଥିବା ଜନ୍ତୁଟିଏ । ସେ ପରା ତୁମ ବିଧାନରେ ଚିରକାଳ ଦୁଃଖୀ । ସେ ତ ଠିଆ ହେଲେ ଦୁଃଖର ପାହାଡ଼ । ସେ କ'ଣ ଆଉ ପ୍ରମାଣ ଦେଇପାରିବ ? ରାଜ ସଭାରେ ଦୁଇ ବାହୁ ଟେକି ସମ୍ପୂର୍ଣ୍ଣ ପରାସ୍ତ ନହେବା ପର୍ଯ୍ୟନ୍ତ ଅପମାନିତା ରାଜବଧୂର ଦୁଃଖ ପାଇଁ ଯଥେଷ୍ଟ ପ୍ରମାଣ ତୁମକୁ ମିଳେ ନାହିଁ ? ତମ ପାଖରେ ସେ ଆଶ୍ରିତା ହୋଇ ସାରିଛି ବୋଲି ପ୍ରମାଣ ମିଳେ ନାହିଁ ? ଏମିତିତ ସେ ଜଣାଉଥିବା ନିଜ ଦୁଃଖର ପ୍ରମାଣ ତୁମ ପାଇଁ କେତେବେଳେ ଯଥେଷ୍ଟ ନ ହୋଇ ପାରେ । ପ୍ରମାଣ ଦେଉ ଦେଉ ଲକ୍ଷ କୋଟି ଦୁଃଖୀ ରାସ୍ତା ଧାରରେ ଅନାହାରରେ ମରି ଯାଉଛନ୍ତି ବନ୍ଧୁ, ତୁମ ବାନ୍ଧବ ପଣ ଭୋଗିବାକୁ ଆଉ ବେଳ କାହିଁ ?

ଗାଳି ଖାଇଲେ ପାଟି ନେଫେଡ଼ି ଡବଡବ ଆଖିରେ ତୁମେ ଚାହିଁ ରହ । ଆମେ ସେତିକି ଦେଖିଦେଲେ ତରଳି ଯାଉ ! ଆହୁରି ଅଭିଯୋଗ ହେଲେ କାଠଘଡ଼ା ଭିତରୁ ସବୁବେଳେ ସେଇ ଚାରି ପାଞ୍ଚଟି କୀର୍ତ୍ତି ବଖାଣିବାକୁ ତୁମକୁ ତିଳାର୍ଦ୍ଧେ ସଂକୋଚ ଲାଗେ ନାହିଁ । କାହିଁ କେବେ ଗୋଟିଏ ମୃଗୁଣୀ ପାଇଁ ବଜ୍ରବିଦ୍ୟୁତ ବର୍ଷା କରି ଦେଇଥିଲ । ତା'ପରେ କୋଟି କୋଟି ଗର୍ଭିଣୀ ମୃଗୁଣୀ ବ୍ୟାଧାହତ ହେବାର ବାର୍ତ୍ତା ତୁମ ପାଖରେ ପହଞ୍ଚି ପାରି ନାହିଁ । କେତେ ଦନ୍ତା ହାତୀକୁ ଅଦୃଶ୍ୟ ଗ୍ରାହମାନେ ଗଣ୍ଡ ଭିତରକୁ ଭିଡ଼ି ନେଉଛନ୍ତି ତୁମେ ଖବର ରଖ ନାହିଁ । ଚାରିଯୁଗରେ ମାତ୍ର ଚାରୋଟିଙ୍କୁ ତ୍ରାଣ କରିଦେଇ ଅକଳନୀୟ ଦୁଃଖୀଜନଙ୍କର ଚିରକାଳ ବାନ୍ଧବ ବୋଲାଇବା ବିଚିତ୍ର ନୁହେଁ କି ? ତଥାପି ସେଇ ଗୋଟିଏ ସୂତାରେ ଆମେ ଅନନ୍ୟୋପାୟ ଆର୍ତ୍ତଜନମାନେ ଝୁଲି ରହିଚୁ; ତୁମର କୋଟି କୈତବ ଆଚରଣ ପରେ ଆମ ଭାଗ୍ୟକୁ ତୁମେ ପୁଣି କାଳେ କୀର୍ତ୍ତି ସ୍ଥାପନ କରିବାକୁ ଇଚ୍ଛା କରିବ ଏବଂ ଆମକୁ ବାଛି ନେବ ଏଇ ଆଶରେ ଝୁଲି ରହିଛୁ ।

ତୁମକୁ ଥରେ ଚାହିଁଦେଇ ମୁଗ୍ଧ ହେଲା ପରେ ଆମକୁ ମୂଢ଼ କହିଲେ ମଧ ଆମର ଆପତ୍ତି ନାହିଁ । ତେଣିକି ତୁମର ସୂକ୍ଷ୍ମ ବିଚାର ସବୁ ଆମକୁ ନିରର୍ଥକ ଲାଗିବା ସ୍ୱାଭାବିକ । ତୁମେ କୁଆଡ଼େ ସ୍ୱତଃ ପ୍ରମାଣ; ତୁମ ପାଇଁ ପ୍ରମାଣର ଆବଶ୍ୟକତା

ନାହିଁ । ତୁମକୁ ପ୍ରମାଣ ମଧ୍ୟ କରି ହେବ ନାହିଁ । ତୁମେ ସେଥିପାଇଁ ଅପ୍ରମେୟ । ତୁମେ ସୁଖ ଦୁଃଖ ନିରପେକ୍ଷ ସାକ୍ଷୀ ପୁରୁଷ । ତୁମର କ'ଣ ଯାଏ ଆସେ କିଏ ଦୁଃଖ ପାଇଲେ ବା ସୁଖ ପାଇଲେ ! ସେଥିପାଇଁ କୁଆଡ଼େ କର୍ମ ବିଧାନ କୋଉଠି ଖଞ୍ଜି ରଖି ଦେଇଛ ଯନ୍ତ୍ର ପରି । ସେଇଠି ନିର୍ଭୁଲ ଭାବରେ କୁଆଡ଼େ ଅଙ୍କ କଷା ଚାଲିଛି । ଅନନ୍ତ ଯାତନା ଭୋଗି ଚାଲିଛି ଜୀବ ବିଚାରା; ତା'ର ଅଜ୍ଞାନ, ଅକର୍ମ ଏବଂ ଅସହାୟତାରେ !

ଏହା ଯଦି ସତ୍ୟ, ତା ହେଲେ ତୁମକୁ ଏତେ ଆପଣାର ଭାବି, ଏମିତି ଚୂଳ ମାଳ ମଣ୍ଡିତ କରି ଏମିତି କୁଣ୍ଢେଇ ଧରିବାର ଅର୍ଥ କିଛି ନାହିଁ । ଆକାଶକୁ କୁଣ୍ଢେଇଲେ ବାହୁପୀଡ଼ନ ହିଁ ସାର । ତୁମେ ତ କେତେବେଳେ କିଛି କହ ନାହିଁ; କହିଲା ପରି ଲାଗେ । ତୁମେ ହୁଏତ ସେମିତି କହୁଛ, "କିରେ, ତୁ କ'ଣ ତୋ ଜୀବନରେ ପ୍ରମାଣ ପାଇ ନାହୁଁ ? ଥରେ ପ୍ରମାଣିତ ହେବା କ'ଣ ଯଥେଷ୍ଟ ନୁହେଁ ? ତୁ ଚାହିଁବା କ୍ଷଣି ତୋର ଆଜ୍ଞାବହ ହୋଇ ମୁଁ ବାରମ୍ବାର ପ୍ରକଟ ହେବାକୁ କ'ଣ ବାଧ ?" - ନା, ତୁମକୁ ବାଧ କରିବାକୁ କାହାର ବା ସାମର୍ଥ୍ୟ ? ଛୁଇଁଦେଲେ, ଆତ୍ମାକୁ ଉଚ୍ଚାଟିତ କରି ଦେଇ ତୁମେ ଅନ୍ତର୍ହିତ ହୋଇଯାଅ । ସେତିକିରେ ତୁମର ପ୍ରମାଣ ମିଳିଗଲା ବୋଲି କ'ଣ ସନ୍ତୁଷ୍ଟ ରହିଯିବାକୁ ହେବ ? ଯେ ସତ୍ୟ, ସେ ଚିର ଭାସ୍ୱର ନିଷ୍କମ୍ପ ହୁତାଶନ ପରି ଜାଜ୍ୱଲ୍ୟମାନ ରହିବାରେ କ୍ଷତି କ'ଣ ? ଆମର ଆପତ୍ତି, ତୁମେ କାହିଁକି ପ୍ରଚ୍ଛନ୍ନ ଅପ୍ରକଟ ହୋଇଯାଅ ବୋଲି ।

'ସାମନ୍ତ ମୋ ଚତୁର୍ବର୍ଗ ଅଧିକାରୀ' ଭାବି ଯେ ତୁମ ପାଖକୁ ଆସିଛି, ତାକୁ ତୁମେ ଦାନା କନା ମନା କରିଦେବ, ସେ ପୁଣି ତୁମରି ଦାଣ୍ଡରେ କେତେ ଦୁଃଖ ପାଇ ଭିକ୍ଷା ମାଗୁଥିବ ? ତୁମେ କ'ଣ ଜାଣିପାରୁ ନାହଁ ଯେ କାଳ ବୈଶାଖୀରେ ତା'ର ସମଗ୍ର ବନଭୂମି ତାପିତ ? ସବୁ ବନସ୍ପତିର ସବୁ ପତ୍ରରେ ଭାର ଭାର ତୃଷା ? ନିରବ ଧରିତ୍ରୀ ତୃଷାରେ ସୋରା ସୋରା ଫାଟି ଯାଉଛି । ତାକୁ ତୁମେ ଦେଖି ନ ଦେଖିଲା ପରି ନିର୍ବିଚାର ତ୍ୟାଗ କରିପାର, ଆପତ୍ତି ନାହିଁ । କିନ୍ତୁ ଦୟାକରି କହ ନାହିଁ କେଉଁ ଚାତକ ଚଞ୍ଚୁରେ ବିନ୍ଦୁଏ ଜଳକଣା ସିଞ୍ଚିଦେଇ ତୁମେ ତୁମର ବନ୍ଧୁପଣ ନିର୍ବାହ କରି ଦେଇଛ । ତା'ର ଅସହାୟତାକୁ, ତୁମ ପାଖରେ ଆଶ୍ରିତ ହେବାର ପରମ ଦୁଃଖୀପଣକୁ ଉପହାସ କରନାହିଁ । ଛଳବାକ୍ୟରେ ତାକୁ ଭଣ୍ଡିବାର ବେଳ ଏ ନୁହେଁ ।

ଆଷାଢ଼ର କଜ୍ଜ୍ୱଳକାନ୍ତ ନବ-ବାରିବାହ ପରି ତା' ଆକାଶରେ ଉଦୟ ହୁଅ, ଦୀନ ବାନ୍ଧବ ! ମନ୍ଦ୍ର-ନାଦରେ ତା'ର ପ୍ରାର୍ଥନାର ଉତ୍ତର ଦିଅ । ତା'ର ଦିଗ୍‌ବଳୟକୁ ଆଚ୍ଛନ୍ନ କରି, ତା'ର ଧରିତ୍ରୀକୁ ସମ୍ପୂର୍ଣ୍ଣ ଆବୃତ କରି ପ୍ରବଳ ଧାରାପାତରେ, ପ୍ରତ୍ୟେକ ଧୂଳିକଣାର ତୃଷା ଥିବା ପର୍ଯ୍ୟନ୍ତ ତୁମେ ବର୍ଷିଯାଅ, ଏଭଳି ବିପୁଳ ପ୍ରମାଣର ଯେଉଁଠି ପ୍ରୟୋଜନ ରହିଛି, ଯେଉଁଠି ତୁମକୁ ଚାହିଁ ପ୍ରାଣ କଣ୍ଠାଗତ, ସେଇଠି କେବେ ବଚନର ନିଷ୍ଠୁରତା ଆଉ କର ନାହିଁ ପ୍ରଭୁ; ଆଶ୍ରିତ-ନିଧନର ପାତକ ଲାଗିଯିବ ! କୀରତି ଚନ୍ଦ୍ରରେ କଳଙ୍କ ଲାଗିଯିବ । ଗରିବ ଡାକ, ଶୁଣିବା ହେଉ ମଣିମା, ନିରେଖ ଜନକୁ ରଖିବା ହେଉ ।

□□□

⊙

ତୁମେ ମୋ ମୁହଁକୁ ଏମିତି ଚାହିଁ ରହିଲେ ତୁଣ୍ଡରୁ ଆଉ ବଚନ ବାହାରୁ ନାହିଁ । ଯାହାସବୁ କହିବାକୁ ଚାହୁଁଥିଲି ସବୁ ବାଟହୁଡ଼ି ଯିବେ ଏ ନିଷ୍କମ୍ପ ଚାହାଣିରେ । ସବୁ ତରଙ୍ଗ ଦ୍ରବିଯିବ । ସ୍ଥିର ହୋଇଯିବ ଶ୍ୱାସ ପତନ, ରକ୍ତ ପ୍ରବାହ, ଶିରା ଉପଶିରାର ସ୍ପନ୍ଦନ । ଫୁଲ ଗର୍ଭରୁ ଶିଶିର ବିନ୍ଦୁକୁ ସୂର୍ଯ୍ୟ ଶୋଷିନେଲା ପରି, ସଂସାରରୁ ମୋତେ କେତେବେଳେ ଏ ଚାହାଣି ଶୋଷି ନେଇଯିବ ମୁଁ ଜାଣିପାରିବି ନାହିଁ । ଦଶଦିଶାକୁ ଆବୋରି ରହିଥିବା ଏ ଦୃଷ୍ଟିରୁ ସାମାନ୍ୟ କୌଣସି ଅନୁକୋଣର ଆଡୁଆଳ ମିଳିଲେ ସିନା ମୋ ସତ୍ତାର ଆତ୍ମ ପ୍ରତ୍ୟୟରୁ ବାକ୍‌ସ୍ପନ୍ଦନ ହୁଅନ୍ତା ! ଭିତରେ ବାହାରେ ଏମିତି ଘୋଟି ରହିଲେ ମୁଁ ବରଂ ସେ ଦୃଷ୍ଟିରେ ଝାସଦେଇ ମୋର ଶେଷକଥା ଅନୁଚ୍ଚାରିତ ଭାବକମ୍ପନରେ ନିବେଦନ କରି ଦେଇପାରେ । ସେଥିପାଇଁ ନୀରବ ଜଣାଉଛି । ନ ଚାହିଁବାର ଛଳକରି କିଛି ସମୟ ଦୃଷ୍ଟି ଅପସାରି ନିଅ । ଶୁଣ କିଛି ସମୟ ମୁଁ କ'ଣ କହୁଛି କିମ୍ବା ଶୁଣିବାର ଭାନ ମଧ୍ୟ କରିପାର ମୋର ସନ୍ତୋଷ ପାଇଁ । ମୋ ପାଇଁ ସେତିକି ଢେର ।

ମୁଁ ତୁମ ଆଗରେ ସତ୍ୟପାଠ କରିବାକୁ ଯାଉନାହିଁ; କାରଣ ସତ୍ୟ ବୋଲାଉଥିବା ଇଲାକାରେ ମୋର ପ୍ରବେଶ ନାହିଁ । ସେଇଟା ତୁମ ଖାସ ମାହାଲ । ମୁଁ ମୋର ପ୍ରକୃତି ଅନୁସାରେ ମିଥ୍ୟାର ହିଁ ଅଧିକାରୀ । ସେଥିପାଇଁ ମୋର ଆୟତ୍ତ ନାହିଁ । କ୍ଷୋଭ ବି କିଛିନାହିଁ । ଅଲଗା ରାଜ୍ୟର ଭାଷା ତୁମେ ବୁଝିପାରିବ କି ନାହିଁ ସେଥିରେ ମୋର ଢେର ସନ୍ଦେହ ଥିଲେ ସୁଦ୍ଧା ଅନ୍ୟ ଉପାୟ ନାହିଁ । ତୁମେ ବେଳେବେଳେ ସାର୍ବଭୌମ ଠାଣିରେ ମୋ ଇଲାକା ଅଧିକାର କରିଥିବାର ନଜିର୍ ଥିବାରୁ କାଳେ ଓହ୍ଲେଇଆସି ସଖାପଣରେ ମୋତେ କୃତାର୍ଥ କରିଦେଇପାର ଏ ଆଶା ବି ମନରୁ ଯାଉନାହିଁ । ତା ବାହାରେ ମୁଁ ନିଜେ ଆଖି ବୁଜିଦେଲେ ମୁହୂର୍ତ୍ତକରେ ଏ ବିଶ୍ୱ ବ୍ରହ୍ମାଣ୍ଡ

ଲିଭିଯାଉଛି । ମୋ ଭିତରର ଅଚଳ ଅନ୍ଧାରକୁ ବିଦୀର୍ଣ୍ଣ କରି ତୁମର ଏ ଦୃଷ୍ଟି ମୋତେ ସର୍ବସ୍ୱାନ୍ତ କରିବା ପୂର୍ବରୁ ନିଜକୁ ନିଜେ ଦୁଇପଦ କହି ଦେବାର ଅବକାଶ ଅଛି । ତୁମେ ଶୁଣିପାର, ଶୁଣୁଥାଇ ପାର କିନ୍ତୁ ମୁଁ ଜାଣିବାରେ ତୁମେ ଶୁଣୁନାହଁ, କେବେ ଶୁଣ ନାହିଁ, ଏ ବିକଳ୍ପଟିକୁ ଗ୍ରହଣ କରି କହୁଛି ।

ମୁଁ ତୁମ କବଳରୁ ମୁକୁଳିବାକୁ ଚାହେଁ । ଅନେକ ଚେଷ୍ଟା କରିଛି ପାରିନାହିଁ । ତୁମଠୁ କାହାରି ନିସ୍ତାର ନାହିଁ । ଅଥଚ ତୁମେ କାହାକୁ ଧରି ରଖିଛ ବୋଲି ମଧ୍ୟ କିଛି ପ୍ରମାଣ ନାହିଁ । ତୁମପାଇଁ ପ୍ରତ୍ୟକ୍ଷ କିମ୍ବା ଅପ୍ରତ୍ୟକ୍ଷ କୌଣସି ପ୍ରମାଣ ନାହିଁ, ତଥାପି ଗୁଡ଼ିଏ ବେକୁବ୍ ମଣିଷ ତୁମକୁ ଡାକି ଲାଗିଛନ୍ତି ନାନା ଭାଷାରେ ନାନା ଢଙ୍ଗରେ । ଆଜି ନୁହେଁ କାହିଁ କେଉଁ ଆଦିଯୁଗରୁ ଯେତେବେଳେ ତା'ର ପ୍ରଥମ ଉନ୍ମେଷ ଘଟିଲା । ତୁମେ ଯେମିତି ଅପ୍ରମେୟ ଥିଲ, ସେହିପରି ଅପ୍ରମେୟ ଅଛ ଏବଂ ରହିବ । ତୁମେ ନାହଁ ବୋଲି କହିବା ଯେତିକି କଷ୍ଟ, ଅଛ ବୋଲି କହିବା ମଧ୍ୟ ସେତିକି କଷ୍ଟ । ସେଥିପାଇଁ ମୁଁ ଏ ଫାନ୍ଦରୁ ମୁକୁଳିବାକୁ ଚାହେଁ । ତୁମ ବିଷୟରେ ସମ୍ପୂର୍ଣ୍ଣ ଅସଂପୃକ୍ତ ରହିବାକୁ ଚାହେଁ । ତୁମର ଥିବା ନ ଥିବା ମୋ ପାଇଁ ଏକ ଅବାନ୍ତର ପ୍ରଶ୍ନ ହୋଇଯାଉ ବୋଲି ଆଶାକରେ ।

ତୁମେ କିନ୍ତୁ ଜୀବନର ଶୂନ୍ୟସ୍ଥାନ ମାନଙ୍କରେ ଶୀତଳ ଜଳରାଶି ପରି ଭରିଯାଅ । କିଛି ନ କରି କୌଣସି ପରିଚୟ ନ ଦେଇ ଉଛୁଳେଇ ପକାଅ । ଛୁଇଁବାକୁ ଚାହିଁଲେ ମାଟି ପାଣି ପବନ ହିଁ ଧରାଦିଏ । ତୁମେ କେଉଁଠି ହେଲେ ନ ଥାଅ । ଅଜଣା କେହି ଜଣେ ପାଖରେ ଠିଆ ହୋଇ ଆପଣା ପଣରେ ମନ କିଣିନିଏ ଭାରଗ୍ରସ୍ତ ହୋଇ ଚାଲୁଥିଲା ବେଳେ ଦକ୍ଷିଣା ପବନ କାହୁଁ ଆସି ଉଲ୍ଲସିତ କରେ; ହାଲୁକା କରିଦିଏ ମଡ଼େଇ ହୋଇ ପଡ଼ିଥିବା ବିନ୍ଧ୍ୟାଚଳମାନଙ୍କୁ । ଗାଲରେ ହାତରଖି କେହି ଜଣେ ମୋ' ଦୁଃଖକୁ ଶୁଣେ; ତା ଆଖିରୁ ବ୍ୟଥାର ଅଶ୍ରୁ ଝରିଯାଏ । ମୋତେ ଦିଶିଯାଏ ଆଉ କିଛି । ମୁଁ କିନ୍ତୁ ବୁଝିପାରେ ନାହିଁ । କେବଳ ବିସ୍ମୟରେ, ଅବିଶ୍ୱାସରେ ପଚାରେ ଏ କ'ଣ ସେଇ ? କୌଣସି ଉତ୍ତର କେବେହେଲେ ପାଏନାହିଁ । ସବୁ ଶୀର୍ଷ ବିନ୍ଦୁମାନଙ୍କରେ ସୃଷ୍ଟିର ବିଭୂତି ଝଲମଲ କରୁଥାଏ । ମୋତେ କୁହାଯାଏ, ହେଇ ଦେଖ୍ ! ସେ ଅଛି ଏବଂ ଜାଜ୍ୱଲ୍ୟମାନ ଝଟକୁଛି ! ଅସ୍ତି ! ଭାତି !! ମୁଁ ଦେଖେ, ଅଥଚ ଦେଖେ ନାହିଁ, କାରଣ ମୋ ଆଖିକୁ କେବଳ କାଷ୍ଠ ପାଷାଣ ହିଁ ଦେଖାଯାଏ । ତା ଉର୍ଦ୍ଧ୍ୱକୁ ଆଉ କିଛି

ନାହିଁ ।

ଧରାଯାଉ ମୋତେ ସବୁ ଯାହା ଦେଖାଯାଉଛି, ସେ ସମସ୍ତ ମିଥ୍ୟା । ମୁଁ ନିଜେ ବି ଏକ ମିଥ୍ୟାର ପିତୁଳା । ବାଆସ୍, ଏ କଥାଟି ଥରେ ସ୍ଥିର ହୋଇଗଲେ ତେଣିକି କିଛି ଅସୁବିଧା ନାହିଁ । ଅନ୍ଧପୁଟୁଳି ବାନ୍ଧିଦେଲେ ଘନ ଅନ୍ଧାର ଦେଖାଯିବ, ଦିଗ ହଜିଯିବ । ପରାପର ଲୀନ ହୋଇଯିବ । ଭଲ ତ, ସେଭଳି ହେବାରେ ଆପତ୍ତି ନାହିଁ । କିନ୍ତୁ ଅନ୍ଧପୁଟୁଳି ବାନ୍ଧି ଧନ୍ଦି ହେଉଥିବା ଅସହାୟ ଲୋକଟିକୁ ପଛରୁ ଟିପମାରି ଉତ୍ୟକ୍ତ କରିବାର ଅର୍ଥ କ'ଣ ? ଅନ୍ଧାର ଭିତରେ ଅନ୍ୟ ଏକ ଅନୁଭବ ଦେବାର ଅର୍ଥ କ'ଣ ? ଉଦ୍ଦେଶ୍ୟ ବୋଧହୁଏ ତାକୁ ଅସ୍ଥିର କରାଇବା । ତା ଆସ୍ଥାର ଦୃଢ଼ତାକୁ ଦୋହଲାଇବା । ଏ କୂଳର ନା ସେ କୂଳର କରି ତାକୁ ହଟହଟା କରିବା ।

ସେଥିପାଇଁ କହୁଛି, ମୋତେ ଛାଡ଼ିଦିଅ । କାରଣ ତୁମ ରାଜ୍ୟକୁ ଏଇଠୁ ଭେଦିଯିବାର ସାମର୍ଥ୍ୟ ମୋର ନାହିଁ । ସେଇଠୁ ମୋ ଅନୁଭବର ପରିସରକୁ ବ୍ୟାପି ଆସିବାର ସାମର୍ଥ୍ୟ ତୁମର ବି ନାହିଁ । ତାହାହେଲେ ଏମିତି ଅସମାହିତ ଝୁଲା ଭିତରେ ପଡ଼ି ରହିବାର ଏବଂ ନିଜକୁ ଅଣାୟତ୍ତରେ ଝୁଲାଇବାର ଅର୍ଥ କିଛି ନାହିଁ । ତୁମେ ସେଥିରେ ବି ବୋଧେ ରାଜି ନୁହଁ । ତୁମେ କ'ଣ ମୋତେ କେତେବେଳେ ଶୁଣ ଯେ ରାଜି ହେବା ପ୍ରଶ୍ନ ଉଠିବ ? ତୁମେ ତୁମ ଢଙ୍ଗରେ ମନଇଚ୍ଛା ଆଚରଣ କରୁଥାଅ, କାରଣ ତୁମକୁ ପଚାରିବାକୁ ଦ୍ୱିତୀୟ କେହି ନାହିଁ ତ' । ଏଣୁ ସଜଉଣ୍ଡି ମୋତେ ବିବ୍ରତ କରିବାର ତୁମର ଅଭ୍ୟାସ ଥିବାର ମୁଁ ସନ୍ଦେହ କରେ । ମୋ ବିଷୟରେ କିଛି କିଛି ତୁମେ ଜାଣ ବୋଲି ମଧ୍ୟ ଜଣାପଡ଼େ । ନ ହେଲେ ବର୍ଷା ରାତିରେ ନଈ କୂଳରୁ ବଂଶୀଧ୍ୱନି ଶୁଣେଇବାର ଅର୍ଥ ନାହିଁ । ତୁମ ବ୍ୟବସ୍ଥାରେ ଯଦି ମୁଁ ମାଟିକାନ୍ଥ ଘେର ଭିତରେ ଅଛି ଏବଂ କୌଣସି ପ୍ରତିବାଦ କରୁନାହିଁ, ମୋତେ ଏଠୁ ଉପାଡ଼ି ନେଇ ବର୍ଷା ବତାସିରେ ଅଠିକଣାରେ ଭ୍ରମାଇବାକୁ ଷଡ଼ଯନ୍ତ୍ର କାହିଁକି ? ଏଠୁ ଉତ୍ତେଜିତ ଅବସ୍ଥାରେ ଗୋଡ଼ କାଢ଼ି ବାହାରିଗଲେ ବର୍ଷା ବତାସୀ ଏବଂ ଆକାଶିଆ ପ୍ରାନ୍ତର ହିଁ ସତ୍ୟ, ଉତ୍‌କୂଳା ନଈ ମଧ୍ୟ ସତ୍ୟ । କିନ୍ତୁ ବଂଶୀ କାହିଁ, ବଂଶୀବାଦକ ବା କାହିଁ ? ଏଭଳି ବାରମ୍ବାର ବିଡ଼ମ୍ବିତ ହେବାର ତିକ୍ତତା ହିଁ ମୋତେ ତୁମଠାରୁ ବିମୁଖ କରୁଛି । କିନ୍ତୁ ସେଥିରେ ମଧ୍ୟ ତୁମ କବଳରୁ ନିସ୍ତାର ନାହିଁ । ତୁମକୁ ନ ଦେଖି, ନ ପାଇ ସ୍ୱୀକାର କଲେ ସିନା ତୁମ ସାଙ୍ଗରେ ଏ ପ୍ରକାର ଭାବ ଅଭାବର ବିମୁଖତା !

ଅଥଚ ହେଇ ତୁମେ ମୋତେ ନିଷ୍ପଲକ ଅନେଇ ରହିଛ । ମୋ ଉପରେ ଦୃଷ୍ଟି ନିବଦ୍ଧ ହେବାର ଅନୁଭବ, ହେଲେ ତୁଣ୍ଡରୁ ବଚନ ସ୍ଫୁରୁନାହିଁ । କାହିଁ କେଉଁ ଅଦୃଶ୍ୟ ଦିଗନ୍ତରୁ ଲୁତାଜାଲ ପରି ଅସଂଖ୍ୟ ତନ୍ତୁ ଭିଡ଼ି ହୋଇ ରହିଛି । କିଭଳି କେମିତି ହୁଏତ ଏ ପ୍ରତିମା ସୂର୍ଯ୍ୟଗର୍ଭ ହୋଇ ଝଟକୁଛି । ଚେତନା ପାରଦ ସମୁଦ୍ର ଭଳି ଏଥିରେ ଟଳମଳ ହେଉଚି । ସେଥିପାଇଁ ଏ ଦୃଷ୍ଟିକୁ ସମ୍ଭାଳି ହେଉନାହିଁ । ତୁମେ ଯଦି ପଞ୍ଚଭୂତ ଭିତରେ ଚଳପ୍ରଚଳ ହୁଅନ୍ତ, କଥା କହନ୍ତ, ହାତଧରି ବାଟ ଚାଲି ପାରନ୍ତ, ତେବେ ତୁମ ସହିତ ଏ ପ୍ରକାର ମାନ ଅଭିମାନର ମାନବଲୀଳା ସମ୍ଭବ ହୁଅନ୍ତା । କିନ୍ତୁ ସେଥିରେ ବି ତୁମେ ରାଜି ନୁହଁ । ବରଂ ଏଭଳି ବାରମ୍ବାର ତୁମେ କରିଛ ଏବଂ ମୁଁ ବାରମ୍ବାର ତୁମକୁ ଅବହେଳା କରିଛି ବୋଲି ତୁମେ ଅଭିଯୋଗ କରୁଛ । ମାନବ ଦେହ ଧାରଣ କଲେ ତୁମକୁ ମୁଁ ଇତର ଦୃଷ୍ଟିରେ ଦେଖିଛି । ବାଁ ହାତ କାଣି ଆଙ୍ଗୁଠିରେ ପର୍ବତ ଟେକି ଧରିଲେ ସୁଦ୍ଧା ତୁମେ ପରମ ବିଶ୍ୱର ନିୟନ୍ତା ବୋଲି ମୁଁ ସ୍ୱୀକାରି ନାହିଁ । ତୁମେ ଦିବ୍ୟକର୍ମ କଲେ ସୁଦ୍ଧା ମୋ ଆଖିରେ ଅଦିବ୍ୟ ଗୋଚର ହୋଇଛ । ସଖା, ବନ୍ଧୁ, ଗୁରୁ, ଜନନୀ ରୂପରେ ମୋର ଯେତେ ନିକଟକୁ ଆସିଛ, ମୁଁ ତୁମକୁ ସେତିକି ସନ୍ଦେହ କରିଛି । ଅପସରି ଗଲେ ପୁଣି ତୁମ ଚିତ୍ର ପ୍ରତିମାକୁ କାଚବାନ୍ଧି ଝୁରି ହୋଇଛି । ଆଉଥରେ ଭଲା ସେମିତି ଆସନ୍ତ କି !

'ଆସନ୍ତି କ'ଣ ? ଆସିଛି ପରା ! ତତେ ପରା ମୁଁ ଚାରିଆଡୁ ଘେରି ରହିଛି । ତୋର ପ୍ରିୟା ପ୍ରିୟ, ସ୍ୱଜନ, ବନ୍ଧୁ, ପ୍ରତିବେଶୀ, ପ୍ରଦେଶୀ ପରା ମୁଁ । ତୁ ଚିରକାଳ ଯେମିତି ଚିହ୍ନି ନ ପାରି ବାଉଳି ହୋଇଛୁ ଏବେ ମଧ ସେଇଆ ।' ଏଇଭଳି ଉତ୍ତରଟାଏ ଶୁଭିଲା ପରି ଲାଗୁଛି । ହୋଇପାରେ ତୁମେ ନିଜେ ତାକୁ ଉଚ୍ଚାରିତ ନ କରି ମୋ ଭିତରେ ପ୍ରତିଧ୍ୱନିତ କରାଉଛ । ଧରାଯାଉ ଏ ଉତ୍ତର ତୁମର ! ଏଥିରେ ମୋର ଅଜ୍ଞତା, ମୋର ଅଗୁଁଆର ପଣ, ଧୃଷ୍ଟତା, ସବୁ ପ୍ରମାଣିତ ହେଉଛି । ମୁଁ ଅଯୋଗ୍ୟ ତୁମକୁ ଦେଖି ଚିହ୍ନିପାରୁ ନାହିଁ । ତୁମେ ଦେଖା ଦେବାକୁ ନ ଚାହିଁଲେ କ'ଣ ମୁଁ ଏମିତି ଦେଖି ଦେଇ ପାରିବି ? ଥରେ ଆଉ ହଲେ ଦିବ୍ୟ ଆଖି ଦେଇଥିଲ । ସେତେବେଳେ ମୁଁ ଦେଖିଥିଲି ତ ! ସେମିତି ଆଉଥରେ ସେ ଦୃଷ୍ଟି ଦେଉନ ! ଯଦି ମୁଁ ଆଉ ଏମିତି ଭୁଲ କରିବି.ତେବେ କହିବ ।

ନା' ତା ହେବା ନାହିଁ । ତୁମେ କ'ଣ ସତରେ ସେମିତି ଦୃଷ୍ଟି ଦିଆନିଆ କର ? ସେମିତି ଅନୁଭବଟାଏ ହୁଏତ ହୁଏ । ମୂଳକଥା ଯୋଉଠି ସେଇଠି ! ମୁଁ

ସତ୍ୟ ରାଜ୍ୟକୁ ଉଠି ଯାଇ ପାରିବିନାହିଁ, ତୁମେ ମୋତେ ନେବନାହିଁ । ତୁମେ ମୋ ରାଜ୍ୟକୁ ଆସି ପାରିବ ନାହିଁ, ମୁଁ ଆଣି ପାରିବି ନାହିଁ । ପରସ୍ପରକୁ ତେବେସୁଦ୍ଧା ଆମେ ଛାଡ଼ିବା ନାହିଁ କି ଧରିବା ନାହିଁ ।

ମୁଁ ସତ୍ୟପାଠ କରିନାହିଁ । ଏ ସମସ୍ତ ସେଥିପାଇଁ ଅର୍ଦ୍ଧ ସତ୍ୟ । କାରଣ ପୂର୍ଣ୍ଣ ସତ୍ୟପରି ପୂର୍ଣ୍ଣ ମିଥ୍ୟା ମୋ ପାଖରେ ସମ୍ଭବ ନୁହେଁ । ପୂର୍ଣ୍ଣ ମିଥ୍ୟା ନିରାଧାର ସମ୍ଭବ ନୁହେଁ । ମୋର ଏକମାତ୍ର ପ୍ରାର୍ଥନା-ତୁମେ ମୋ ସହିତ ଏପରି ଆଉ ବ୍ୟବହାର କରନାହିଁ । ମୋତେ ଆଉ ବାରମ୍ବାର ଅପମାନିତ କର ନାହିଁ । ମୋତେ ଅବିଶ୍ୱାସ କରି ମୋ ଆଖିକି ଏମିତି ନିଷ୍ପଲକ ଚାହିଁରହି ମୋତେ ଅଚଳ କରିଦିଅ ନାହିଁ । ମୁଁ ଚୋର ନୁହେଁ, ମୋର ସର ଲବଣୀ ପ୍ରତି କୌଣସି ଅସାଧାରଣ ପ୍ରୀତିନାହିଁ । ମୁଁ ଲମ୍ପଟ ନୁହେଁ, ଶଠ ନୁହେଁ । ମୋତେ ସେଭଳି ବୃତ୍ତିରେ ଲଗେଇ ଦେଇ ଏମିତି ପହରାଦାର ପରି ଜଗିଲେ, ମୁଁ ନିଜ ଆଖିରେ ନିଜେ ଛୋଟ ହୋଇଯାଉଛି । ମୋତେ ଏ ଗ୍ଲାନିରୁ ରକ୍ଷାକର । ମୋତେ ତୁମ ଅଠାକାଠିରୁ ବଞ୍ଚାଅ । ମୁଁ ଡେଣାଝାଡ଼ି ମୁକୁଳିବାର ପ୍ରୟାସ କଲେ ହିଁ ଅଧିକ ଜଡ଼ିତ ହୋଇଯାଉଛି । ଅଠାକାଠି ଅସଂଖ୍ୟ ତନ୍ତୁ ମେଲି ମୋତେ ବାନ୍ଧି ଦେଉଛି ।

ତୁମ କଳାବଦନ ମୁଁ ଦେଖିବାକୁ ଚାହେଁନା । କଳା ମାଣିକ ପରି ଲୋଭନୀୟ ହୁଅନାହିଁ । ତୁମ ପହଣ୍ଡି ଖେଳରେ ମୋର କ'ଣ ପ୍ରୟୋଜନ ? ଟାହିଆ ଝୁଲାଇ ମୋତେ ପ୍ରଲୁବ୍ଧ କରନାହିଁ । ତୁମ ରଥ ଦାଣ୍ଡର ବିପଣୀ ମୋ ପାଇଁ ଅର୍ଥହୀନ । ତ୍ରିଗୁଣ ରଜ୍ଜୁର କମ୍ପନ ଏବଂ ନେମିଘୋଷରେ ତାକୁ ରଞ୍ଜିତ କରନାହିଁ । ମୁଁ ମୋ କର୍ମ ଆଦରି ଅପସରିଗଲେ ସମୁଦ୍ରରେ, ଆକାଶରେ, ଘନନୀଳ ମହିମାରେ ବ୍ୟାପି ଯାଅନାହିଁ । ଏମିତି ଯଦି ସତେ ମୋତେ ଚାହୁଁଥାଅ, ସେଥିପାଇଁ ଉଚ୍ଚାଟିତ କରୁଥାଅ, ତେବେ ମୋ ଆଗରେ ସାହସର ସହିତ ଜ୍ୱଳମାନ ସୂର୍ଯ୍ୟପରି ସ୍ୱରୂପରେ ପ୍ରକଟିତ ହୁଅ । ମୋତେ ଆଛନ୍ନ କର, ଗ୍ରାସକର, ତୁମର ସପରିମେୟ ଦୃଷ୍ଟିରେ ମୋତେ ପାନକର । ନଚେତ୍ କାଷ୍ଠ ପାଷାଣ ହୋଇଯାଅ । ସ୍ପନ୍ଦନହୀନ, ନିଷ୍ପ୍ରାଣ ଜଡ଼ ହୋଇଯାଅ । ମୁଁ ବି ଅଥର୍ବ ନିଶ୍ଚେତନ ହୋଇଯାଏ । କିନ୍ତୁ ମଧ୍ୟଭୂମିରେ ତୃଷାଗ୍ନିର ବିଡ଼ମ୍ବନାରେ ଆଉ ତାପିତ କରନାହିଁ । ଏମିତି ନିରବ ଦୂରସ୍ଥ ଦୃଷ୍ଟିରେ ମୋତେ ଚାହଁ ନାହିଁ । ମୋତେ ଅସହାୟ ଦିଶନାହିଁ, ଏତେ ଅସହାୟ କରନାହିଁ, ଦ୍ୱନ୍ଦମୁକ୍ତ କର, ଜ୍ୱାଳାମୁକ୍ତ କର ।

□□□

ଅନାଦିମଧ୍ୟାନ୍ତ ମଚିନ୍ତ୍ୟରୂପମ୍
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଗୂଢ଼ାୟ କୂଟସଙ୍କେତ ବିଗ୍ରହାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ବ୍ରହ୍ମୋଦରଂ ବିବିକ୍ତ ବ୍ୟୋମ ବର୍ଣ୍ଣମ୍
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ବେଦାନ୍ତବେଦ୍ୟାୟ ବେଦୋତ୍ତରାୟ
ନମୋନମସ୍ତେ ପୁରୁଷୋତ୍ତମାୟ ।
ସତ୍ୟାୟ ଧର୍ମାୟ ସଦସତ୍‌ପରାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଏକାୟ ସକଳ ଦେବସମନ୍ୱିତାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ଶାନ୍ତାୟ ଶୁଭମଙ୍ଗଳକାରକାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
ନୀଳାଦ୍ରିନାଥାୟ ଜଗଦ୍ଧିତାୟ
ନମୋ ନମସ୍ତେ ପୁରୁଷୋତ୍ତମାୟ ।
॥ ନମୋ ନମସ୍ତେ ପୁରୁଷୋତ୍ତମାୟ ॥

⊙

ମୋତେ ବରଂ ସେ ଦିବ୍ୟ ଦୃଷ୍ଟି ଦିଅ ନାହିଁ । କାରଣ ତୁମର ସେ ଇନ୍ଦ୍ରଜାଲରେ ଧରାପଡ଼ିବା ମୋର ଅଭିପ୍ରାୟ ନୁହେଁ । ମୋର ଏହି ସାଧାରଣ ମାନବ ଦୃଷ୍ଟିରେ ଯେତିକି ଦିଶିଲା, ସେଥିରେ ଯଦି ସତ୍ୟ ନାହିଁ, ଚକ୍ଷୁ ବନ୍ଧନ କରି ତାକୁ ଲକ୍ଷେ ଯୋଜନ ବିସ୍ତାରି ଦେଲେ ଭଲା କିଛି ଲାଭ ଅଛି ? ବିସ୍ମୟ-ବିମୂଢ଼, ତ୍ରସ୍ତ, ନଗଣ୍ୟ ବୋଧ କଲେ ଭଲା କିଏ ସତ୍ୟ ଦର୍ଶନର ଅଧିକାରୀ ହୋଇପାରେ ? ଦଶଦିଶା-ପରିବ୍ୟାପ୍ତ, ସହସ୍ରେ ସୂର୍ଯ୍ୟ ପରି ଦୁର୍ଦ୍ଧର୍ଷ, ସହସ୍ର ବାହୁ, ସହସ୍ର ଶୀର୍ଷ, କରାଳ ଦନ୍ତମୁଖ, ଲେଲିହାନ ଜିହ୍ୱା, ମହାକାଳ ରୂପକୁ ଭୟରେ ଥରି ଥରି ଦେଖି ଦେବାରେ ମୋର ସେପରି କୌଣସି ମହାର୍ଘ ଉପଲବ୍ଧି ହେଲାପରି ଲାଗୁ ନାହିଁ । ମୋ ନିଜର କର୍ତ୍ତୃତ୍ୱ କିମ୍ବା କୃତିତ୍ୱ ବି ସେଥିରେ କିଛି ନାହିଁ । ତୁମର ହିଁ ଯୋଗ ବଳରେ ତାହା ମୋ ପ୍ରତି ତୁମର ଅନୁଗ୍ରହ। ଆଉ କେହି ନିଜ ପ୍ରୟାସ ବା ତପସ୍ୟାରେ ସେ ରୂପ ଦେଖିପାରି ନାହାନ୍ତି ସତ; ତୁମେ ସ୍ୱୟଂ ନ ଚାହିଁଲେ କେହି ସେ ରୂପ ଦର୍ଶନ କରିପାରିବେ ନାହିଁ-ଦେବତା ଗନ୍ଧର୍ବ, ସିଦ୍ଧ ସାଧକ ତପସ୍ୱୀ କେହି ପାରିବେ ନାହିଁ-ଏହା ବି ସତ୍ୟ ! କିନ୍ତୁ ସେ ବ୍ୟାପ୍ତି ଦେଖିଦେଲା ପରେ ଭୟରେ ଆଖିବୁଜି ତା'ର ଉପସଂହାର ପାଇଁ ପ୍ରାର୍ଥନା କରିବା ଅପେକ୍ଷା ମୂଳରୁ ସେ ଦିବ୍ୟ ଦୃଷ୍ଟିକୁ ବିନୀତ ଭାବରେ ନାହିଁ କରିଦେବା କ'ଣ ଉଚିତ ନୁହେଁ କି ? ତୁମର ଦିବ୍ୟ ରୂପ ଦେଖିବାକୁ ଲାଳସୀ ହେଲେ ସିନା ତୁମେ ବିଶେଷ କୃପାପରବଶ ହୋଇ ସେ ଦିବ୍ୟଦୃଷ୍ଟିକୁ ଆରୋପ କରିଥାନ୍ତ, ଏବଂ ତେଣିକି ଯାହା ହଟହଟା ଦୁର୍ଯୋଗ ସେଥିପାଇଁ ପ୍ରାର୍ଥୀ ସ୍ୱୟଂ ଦାୟୀ ହୁଅନ୍ତା; କିନ୍ତୁ ମୁଁ ତ କେବେ ତୁମର ଦିବ୍ୟ ରୂପ ଦେଖିବାକୁ ଚାହେଁ ନାହିଁ ! ମୋ ପାଇଁ ଅଦିବ୍ୟ ହିଁ ଯଥେଷ୍ଟ । ଅବଶ୍ୟ ତୁମେ ଯଦି ଦେଖାଇବାରୁ ଚାହୁଁଥାଅ ସେ କଥା ଅଲଗା ।

ତେବେ ତୁମର ସର୍ବୋତ୍ତମ ମହାର୍ଘ ରୂପ ପାଇଁ ଏଭଳି ଅବହେଳାରେ ଅନିଚ୍ଛା

ପ୍ରକାଶ କରୁଥିବାର ଧୃଷ୍ଟତା ବୋଧହୁଏ, ତୁମେ କ୍ଷମା କରିପାରିଲ ନାହିଁ । ଏଣୁ ସେ ଅକଳନୀୟ ରୂପ ବିସ୍ତାରକୁ ସଙ୍କୁଚିତ କରି ଆଣିଲ । ଅକଳନୀୟ ଅବୟବମାନଙ୍କୁ ବର୍ଜନ କରିଦେଲ । ଚାହୁଁ ଚାହୁଁ ମହାବ୍ୟୋମ ଗର୍ଭରୁ ପ୍ରବଳ ବେଗରେ ଆକୁଞ୍ଚନ କ୍ରିୟା ପ୍ରଭାବରେ ସୃଷ୍ଟି ପ୍ରକମ୍ପିତ ହେଲା । ଅନନ୍ତବାହୁ ଅନନ୍ତଶୀର୍ଷା ଅନ୍ତର୍ଦ୍ଧାନ ହୋଇଯିବାର ଉପକ୍ରମ ଦେଖାଗଲା । ସେ କ'ଣ ଚତୁର୍ଭୁଜ ରୂପରେ ମୁହୂର୍ତ୍ତେ ସୁଦ୍ଧା ଅପେକ୍ଷା କରିବେ ନାହିଁ ? ମହାକାଳ ରୂପ କ'ଣ ତା' ହେଲେ ମହାଶୂନ୍ୟକୁ ଅବତରି ଯିବେ କି ? ସେଭଳି ପ୍ରଳୟ ହୋଇଯିବା ପୂର୍ବରୁ ତ୍ରାହି ତ୍ରାହି ଡାକ ଶୁଭିଥିବ । ସ୍ଥିର ହୋଇ ଯାଇଥିବ ପ୍ରଳୀୟମାନ ବିଶ୍ୱରୂପ । ସ୍ଥିର ହୋଇଥିବ ଚେତନା ଓ ଦୃଷ୍ଟି । ଦେଖିଲା ବେଳକୁ ହସ୍ତପଦ ବିରହିତ ନିରବୟବ ସ୍ତବ୍ଧ ଚକିତ ସ୍ଥାଣୁ କିମ୍ଭୂତ ରୂପଟିଏ ନିଷ୍ପଲକ ଚାହିଁ ରହିଛନ୍ତି ! ଅଦିବ୍ୟ ରୂପ ପାଇଁ ପ୍ରାର୍ଥନା କଲି ବୋଲି ଏହା କ'ଣ ମୋ ପାଇଁ ଦଣ୍ଡବିଧାନ ନା ପରିହାସ ? ମୁଁ ଦେଖିପାରୁଛି କେବଳ ଆଭାସରୁ ଯେ ମହାବ୍ୟୋମର ଘନକୃଷ୍ଣ ବର୍ଣ୍ଣ ଯେଉଁଠି ଲାଖି ରହିଛି, ଅସଂଖ୍ୟ ଗ୍ରହ ତାରା ବିଲୀନ ହେଲା ପରେ କେବଳ ଦୁଇଟି ପ୍ରବଳ ଭୁଜଦଣ୍ଡ ଆଭାସ ମାତ୍ର ଦୃଶ୍ୟମାନ । ତେଣିକି ଆଉ କିଛି ନାହିଁ । ଏହା କ'ଣ ତୁମର ନିଷ୍କରୁଣ କ୍ରୁଦ୍ଧ ରୂପ ? ଏହା କ'ଣ ସେ ବିଶ୍ୱମୟ ବିଭୂତିର ନ୍ୟୂନତମ ଅବଶେଷ ? ତୁମେ କ'ଣ କହିବାକୁ ଚାହୁଁଛ, "ମୁଁ ତୋତେ ମୋର ସମଗ୍ର ଐଶ୍ୱର୍ଯ୍ୟ ଦେଖିବାର ସୁଯୋଗ ଦେଇଥାନ୍ତି । ତୋର ସୀମିତ ଚେତନା ଭିତରେ ଅସୀମର ସଂଘାତ ହୋଇଥାନ୍ତା । ତୁ ମୋର ଇଚ୍ଛାର ବିରୋଧାଚରଣ କଲୁ । ତୁ କୃପାର ଅଯୋଗ୍ୟ । ତୋତେ କୌଣସି ସୌମ୍ୟ ରୂପ ପ୍ରାପ୍ତ ହେବ ନାହିଁ । ତୋ ପାଇଁ ଏଇ ମାତ୍ର ଯଥେଷ୍ଟ ।"

"ଶୁଣିବା ହୁଅନ୍ତୁ ଦେବାଧିଦେବ ! ମୁଁ ଛାର କିଏ ତୁମ ଇଚ୍ଛାର ବିରୋଧ କରିବାକୁ ? ଯା'ର ଇଚ୍ଛାରେ ଏ ସଚରାଚର ବ୍ରହ୍ମାଣ୍ଡ ଆତଯାତ ହେଉଛି, ଆକାଶରେ ସୂର୍ଯ୍ୟ ଚନ୍ଦ୍ର ନିଲମ୍ବିତ; ଗଙ୍ଗାଦ୍ୟା ନଦୀମାନେ ପ୍ରବାହମାନା, ମୁଁ କ'ଣ ତାକୁ ରୋଧି ପାରିବି ? ମୋତେ ଯେଉଁ ସ୍ୱତନ୍ତ୍ର ଚେତନା, ଯେଉଁ ମନସ୍କତା ଆଉ ବିଚାର ଶକ୍ତି ଦେଇଛ ମୁଁ ତାକୁ ତୁମରି ଇଚ୍ଛାରେ ହିଁ ପ୍ରୟୋଗ କରିଥିଲି । ପ୍ରୟୋଗ କରିବାର ସଙ୍କଳ୍ପ ଶକ୍ତି ମଧ୍ୟ ତୁମର ହିଁ ଦାନ । ମୋର ଇଚ୍ଛା ବୋଲି ସ୍ୱତନ୍ତ୍ର କିଛି ଅଛି କି ? ଯଦି ଅଛି ତାକୁ ଅବହେଳା କରିବାର ଅଧିକାର କାହାରି ଅଛି କି ? ତୁମ ଇଚ୍ଛାରେ ଶକ୍ତି

ଅଛି; ମୋର ଇଚ୍ଛା, ଇଚ୍ଛା ମାତ୍ର । ସେଥିପାଇଁ ମୋର ହିଁ ଇଚ୍ଛାର ବିରୋଧ ମୁଁ ଜୀବନ ସାରା ସହି ଆସିଛି । ଯାହା ଚାହିଁଛି ତାହା ପାଇ ନାହିଁ । ଯାହା ପାଇଛି ତାହା ଚାହିଁ ନାହିଁ । ମୋର ତାହାହିଁ ଦୁଃଖ । ମୋର ହିଁ ଇଚ୍ଛାର ଅବମାନନା ହୋଇ ଚାଲିଥାଏ ଦୁଃଖ, ଶୋକ, ଭୟ ଏବଂ ଯାତନାରେ । ସେ ସବୁ ଅଯାଚିତ ଆସି ମୋତେ ବିମର୍ଦ୍ଦିତ କରି ଚାଲିଯାନ୍ତି । ମୁଁ ତ୍ରାହି ତ୍ରାହି ଡାକେ । ଇଚ୍ଛା କରେ ସେମାନଙ୍କର ଅବସାନ, ଇଚ୍ଛା କରୁଥାଏ ତୁମର ଆବିର୍ଭାବ, ତୁମ କରୁଣାର ସିକର ବିନ୍ଦୁ । କିନ୍ତୁ ମୋ ଇଚ୍ଛାରେ ଶକ୍ତି ନ ଥାଏ । ଏଣୁ କିଛି ହୁଏ ନାହିଁ; ଇଚ୍ଛା ଇଚ୍ଛାରେ ହିଁ ରହିଯାଏ ।

ଅଯାଚିତ ଯାତନା ପରି ଅଯାଚିତ କରୁଣା ମଧ୍ୟ ଏକ ଅତ୍ୟାଚାର । ମୁଁ ଚାହିଁ ନାହିଁ ତୁମ ଦିବ୍ୟ ରୂପ; ଚାହିଁ ନାହିଁ ମୋତେ ତୁମ ଦିବ୍ୟ ଦୃଷ୍ଟି ଦେଇ ଅଭିଭୂତ କରିବାକୁ । ମୋର ଇଚ୍ଛା ନାହିଁ ବୋଲି କହିଦେବା କ'ଣ ଅପରାଧ ? ତୁମେ ତ ତାକୁ ଅବଲୀଳାକ୍ରମେ ଉଲ୍ଲଙ୍ଘନ କରି ମୋ ଉପରେ ମଡ଼େଇ ହୋଇ ପଡ଼ିଥାନ୍ତ, "ରେ ନିର୍ବୋଧ ! ତୁ ଜାଣୁନା କ'ଣ କହୁଛୁ, କ'ଣ ଚାହୁଁଛୁ ! ମୋର ଦୁର୍ଲ୍ଲଭ କୃପା ଲାଭ କରି କୃତାର୍ଥ ଅନୁଭବ କର ।"

ମୁଁ ତଥାପି ଏ ବଳତ୍କାର ସ୍ୱୀକାର କରି ନ ଥାନ୍ତି । ଅନନ୍ୟୋପାୟ ହୋଇ ସେ ହୃତ୍‌କମ୍ପନକାରୀ ପ୍ରବଳ ଶକ୍ତି ପାଖରେ ପରାସ୍ତ ବିମର୍ଦ୍ଦିତ, କ୍ଲାନ୍ତ, ବିମୂଢ଼ ହେଉଥାନ୍ତି ସତ, କିନ୍ତୁ ଘୋର ଅନିଚ୍ଛା ସତ୍ତ୍ୱେ ! ମୁଁ ସତ କହୁଛି, ମୁଁ ଆପ୍ୟାୟିତ, କୃତାର୍ଥ, ପୁଲକିତ ହୋଇପାରି ନଥାନ୍ତି । ତୁମେ ମୋତେ ଭୟାର୍ତ୍ତ, ସ୍ତମ୍ଭିତ ଅସହାୟ କରିବାକୁ ଚାହଁ । ମୁଁ କିନ୍ତୁ ଚାହେଁ ବିମୋହିତ, ସୁରଭିତ, ପୁଷ୍ପିତ ବୋଧ କରିବାକୁ, ସମ ଭୂମିରେ ତୁମର ସାନ୍ନିଧ, ଆଶ୍ଳେଷ ଲାଭ କରିବାକୁ । ଏଭଳି ଚାହିଁବା କ'ଣ ତୁମର ଅବମାନନା ? ଅସୀମକୁ ସୀମିତ ବନମାଳା ମଣ୍ଡିତ କରିବା କ'ଣ ଅପରାଧ ? ତୁମେ ମୋର ଇଚ୍ଛାକୁ ଉଲ୍ଲଙ୍ଘନ ତ କଲ ନାହିଁ, ତା'ର ନିଭୃତ ଆବେଦନକୁ ସୁଦ୍ଧା ସ୍ୱୀକାର କଲ ନାହିଁ । ଭୟାର୍ତ୍ତ ପ୍ରାଣୀଟିଏ ନିଷ୍କ୍ରିୟ ହୋଇଯାଏ, ସମର୍ପିତ ହୁଏ ନାହିଁ । ପ୍ରେମରେ ହିଁ ସେ ସମର୍ପିତ ହୋଇଯାଏ । ମୁଁ ତ ଚିରକାଳ ତୁମର । ମୁଁ କେବଳ ଚାହିଁଥିଲି ମୋତେ ତୁମେ ଅଙ୍ଗୀକାର କରିବାକୁ, ବଳାତ୍କାର କରିବାକୁ ନୁହେଁ । ତାହା ମୋ ପାଇଁ ଅପମାନ; ତୁମ ପାଇଁ ଅଶୋଭନୀୟ । ଏଣୁ କହିଥିଲି ସେ ବିପୁଳ, ବିରାଟ, ବିକଟାଳ ରୂପକୁ ନେଇ ମୁଁ କ'ଣ କରିବି ? ମୋତେ ବରଂ ଅଦିବ୍ୟ ରୂପରେ ଦେଖାଦିଅ ।

ତୁମେ ହୁଏତ କ୍ରୋଧ କରି ନାହଁ । କାରଣ ସେ ବିରାଟ ମହାକାଳ ଭାବରେ ଥାଇ କ୍ରୋଧ କରିଥିଲେ ଏ ସୃଷ୍ଟି ଜଳି ଯାଇଥାନ୍ତା । ତୁମେ ତା' ହେଲେ କ'ଣ ଅଭିମାନ କରିଛ ? ବାଳୁତଟିଏ ସତେବା ବାଘମୁଖା ପିନ୍ଧି ଗର୍ଜନ କରି ମାଡ଼ି ଆସିଲା ବେଳେ ଆଶା କରିଥାଏ, ଏ ପକ୍ଷରୁ ଭୟଭୀତ ହୋଇ ସାଙ୍କୁଡ଼ି ଯିବାର ପ୍ରତିକ୍ରିୟା । କିନ୍ତୁ ଯଦି ସେ ମୁହଁ ଆଡ଼କରି କହିଦିଏ, "ନାଁ, ମୋର ଏସବୁ ପ୍ରୟୋଜନ ନାହିଁ, ମୁଁ ଚାହେଁନା ତୋର ବାଘ ରୂପ," ତାହେଲେ ଲୀଳା ପ୍ରବଣ ଶିଶୁ ନିଶ୍ଚୟ ଅଭିମାନରେ ଫାଟିପଡ଼ିବ, ଫିଙ୍ଗିଦେବ ମୁଖା ଆଉ ଆବରଣ । ଗୋଟାଏ କୁଣରେ ହାତଗୋଡ଼ ଲୁଚେଇ ରୁଷି ବସିବ। ଢଳଢ଼ଳ ଆଖିରେ ଚାହିଁ ରହିବ ଶୂନ୍ୟକୁ । ତେବେ କ'ଣ ନୀଳ କନ୍ଦର ଭିତରେ ତୁମେ ହାତ ଗୋଡ଼ ଅପ୍ରକଟ କରି ରୁଷି ବସିଛ ପ୍ରଭୁ ? ତୁମର ଲୀଳା ଭଙ୍ଗ କଲି ବୋଲି ରୋଷରେ କିଛି କହିବି ନାହିଁ, କିଛି ଶୁଣିବି ନାହିଁ, କୁଆଡ଼େ ଘୁଞ୍ଚିବି ନାହିଁ ଭଙ୍ଗୀରେ ଏମିତି ଚୁପ୍‌ଚାପ୍ ଚାହିଁ ରହିଛ ? ଆଉ ସାମାନ୍ୟ ଦବିଗଲେ ହୁଏତ ଆଖିରୁ ଧାରଧାର ଉଷ୍ଣ ଅଶ୍ରୁ ବର୍ଷିଯିବ । ଅଧର କମ୍ପି ଉଠିବ। ମୁଁ ଯଦି ହାତ ଓଠ ଧରିବାକୁ ବିଗ୍ରହ ଛୁଇଁଦିଏ, ଯଦି ଅପ୍ରକଟ ଆବରଣକୁ ଅପସାରିତ କରିବାର ଚେଷ୍ଟା କରେ ତା' ହେଲେ ଆହୁରି ରୁଷିବାକୁ ମୋତେ ଛିଣ୍ଡାଡ଼ି ଦେବାର ପ୍ରୟାସରେ ହିଁ ତୁମେ ପ୍ରକଟିତ ହୋଇଯିବ । ସ୍ଥାଣୁ ଅଚଳ ଭଙ୍ଗୀରେ ସଚଳ ଲୀଳା ଭାବ ଆସିଯିବ । ତାହା ହିଁ ହେବ ମୋ ପାଇଁ ପରମ ସୌଭାଗ୍ୟ ।

ମୁଁ ତୁମର ଅନନ୍ତକୋଟି ବିଶ୍ୱରୂପ ସହସ୍ରେବାର ଦେଖିବାକୁ ପ୍ରତିଶ୍ରୁତି ଦେଉଛି । ଆଉ ତୁମର ଲୀଳା ଭଙ୍ଗ କରିବି ନାହିଁ । ସେଥିରେ ମୋତେ ଭୀତତ୍ରସ୍ତ ହୋଇ ସହସ୍ରେବାର ମରିବାକୁ ହେଲେ ମଧ୍ୟ ତାହା ମୋର ବରଣୀୟ । କେବଳ ଗୋଟିଏ ମାତ୍ର ଆଶା ଯେ କେବେ ଏ ଦିବ୍ୟଲୀଳାରୁ ମନ ଓହରିଗଲେ ତୁମେ ହୁଏତ ମୋର ସୁକୁମାର ଇଚ୍ଛାଟିକୁ ପୂରଣ କରିବ । ତୁମର ସୌମ୍ୟ ରୂପ ଦେଖିବା ମାତ୍ରେ ଏ ବନମାଳା ଅର୍ପଣ କରିବାକୁ ଅପେକ୍ଷା କରିକରି ବାରମ୍ବାର ତୁମ ବିଶ୍ୱରୂପର ଅଗ୍ନି କଟାହରେ ଝାସ ଦେଉଥିବି । ବିମୂଢ଼ ହୋଇ ଚାହୁଁଥିବି ସହସ୍ରଶୀର୍ଷା ପୁରୁଷଙ୍କୁ । କାହା ଗଳାରେ ମାଳା ମଣ୍ଡନ କରି ନ ପାରି ସେଇ ମାଳାକୁ ତୋଳି ଧରି ନିଜକୁ ବିସର୍ଜନ କରି ଚାଲିଥିବି ! ତୁମର କ'ଣ କେବେହେଲେ ମାଧୁର୍ଯ୍ୟ ପ୍ରକଟ ହେବ ନାହିଁ ?

ତୁମର ସେ ନିଶ୍ଚଳ ଚାହାଣିରେ ତୁମେ କହିଲା ପରି ବୋଧ ହେଉଛ, "ଉହୁଁ; ମୁଁ ଆଉ ଜନ୍ମା ପ୍ରକଟିତ ହେବି ନାହିଁ । ଏମିତି ନିଶ୍ଚଳ ବସି ରହିବି ଅନନ୍ତକାଳ । ଦିଶୁଥିବି, ଦିଶୁ ନ ଥିବି । ଶୁଣୁଥିବି, ଶୁଣୁ ନ ଥିବି । ଦେଖୁଥିବି, ଦେଖୁ ନ ଥିବି । ତୁ ମୋର କୌଣସି ଅବୟବ ଖୋଜିପାଇବୁ ନାହିଁ । ଅପ୍ରକଟର ଅନ୍ତରାଳରେ ମୁଁ ତୋତେ ଧରା ଦେବି ନାହିଁ । ତୋ ଫୁଲମାଳ ପାଇଁ ମୋର ଗଳା ନାହିଁ । ତୁ ତାକୁ ଧରି ଠିଆ ହୋଇଥା, ଯେତେକାଳ ଚାହୁଁଛୁ । ତୋ ସାଙ୍ଗେ ମୋର କଟି । ତୁ ମୋର ଶରଧା ଭାଙ୍ଗିଦେଇଛୁ । ତୁ ଯାହା କହିଲେ- ବି ମୁଁ ଆଉ ତୋ ସହିତ ଖେଳିବାକୁ ରାଜି ନୁହେଁ ।"

ଏଭଳି ନିରାଶ ବାକ୍ୟ କହିବା କ'ଣ କରୁଣାବନ୍ତଙ୍କୁ ଶୋଭା ପାଉଛି ? ତୁମେ କ'ଣ ସବୁବେଳେ ମହାକାଳ ରୂପରେ ଲୋକକ୍ଷୟ କରିବାକୁ ଉଦ୍ୟତ ହୋଇ ରହିଥିବ ନା' ଏମିତି ରୁଷି ବସିଥିବ ଏବଂ ଚାହିଁ ରହିଥିବ ଶୂନ୍ୟକୁ ? ଏ ଜୀବାତ୍ମାକୁ ଯଦି ତୁମର ବିବିଧ ଲୀଳା ପାଇଁ ସହଯୋଗୀ ବୋଲି ସ୍ୱୀକାର କରୁଛ, ତା'ର ଇଚ୍ଛା ଅନିଚ୍ଛାକୁ ହତାଦର କରିବାରେ କ'ଣ ଲୀଳା ରସର ପରିପୁଷ୍ଟି ହେଉଛି ପ୍ରଭୁ ? କୁରୁକ୍ଷେତ୍ରର ଖେଳ କ'ଣ କାଳିନ୍ଦୀ ତଟର ଉପଯୁକ୍ତ ? ସମସ୍ତେ ତ' ପୁଣି ଧନୁର୍ଦ୍ଧର ପାଣ୍ଡବ ନୁହନ୍ତି, କିମ୍ବା ତୁମର ଦୁର୍ଲ୍ଲଭ ସଖାପଣର ଅଧିକାରୀ ନୁହନ୍ତି । ମହାହବର ନରମେଧ ଯଜ୍ଞରେ ତୁମର ନିମିତ୍ତ ହେବା ପାଇଁ କ'ଣ ଜୀବାତ୍ମା ମାତ୍ରେ ଅଧିକାରୀ ? ଟିକିଏ ସ୍ଥିର ଚିତ୍ତରେ ଚିନ୍ତା କଲ ଦେଖି ! ତୁମକୁ ଲୀଳା କରିବାକୁ କେହି କ'ଣ ବାଧ କରେ ? ତୁମେ ହିଁ ଅନନ୍ତ କୋଟି ଜୀବମାନଙ୍କ ଭିତରେ ପ୍ରତ୍ୟେକକୁ ସ୍ୱତନ୍ତ୍ର ଲୀଳାରେ ତୁମ ସହିତ ଖେଳିବାର ସୁଯୋଗ ଦେଇଥାଅ । ସେ ଖେଳି ଚାଲିଥାଏ । ବ୍ୟାମୋହରେ ଜାଣିପାରେ ନାହିଁ ତୁମେ ତା' ସହିତ ଖେଳୁଚ ବୋଲି । ଯଦି କେହି ତୁମକୁ ଚିହ୍ନି ଦେଲା ଏବଂ ଅନୁରୋଧ କଲା, 'ପ୍ରଭୁ, ଚାଲ ଏ ଖେଳ ଛାଡ଼ି ଅନ୍ୟ ଖେଳ ଖେଳିବା ।' ସେଥିରେ ଏତେ ଆହତ ହେବାର କ'ଣ ଅଛି ? ଯେଉଁ ଖେଳଟି ପାଇଁ ସେ ଆମନ୍ତ୍ରଣ କରୁଛି, ତାହା ତୁମର ଅତି ପ୍ରିୟ ବୋଲି ସେ ଜାଣେ । କିନ୍ତୁ ତୁମର ଜିଦ୍ ଯେ ସେ କାହିଁକି ତୁମର ଡରାଣ ଖେଳରେ ସହଯୋଗୀ ହେଲା ନାହିଁ ! ତୁମେ ଚାହୁଁଛ ଅଥଚ ସେ ନ ଚାହିଁବାକୁ କିଏ ?

ଅପରାଧ କ୍ଷମା ହୋଇଯାଉ ସାଆନ୍ତେ । ତୁମର ଏ ରୁଷା ଅଭିମାନ ଦେଖିଲା ପରେ ମୁଁ ମୋର ଇଚ୍ଛା ଅନିଚ୍ଛା ଭୁଲିଗଲିଣି । ଚାଲ ତୁମ ଇଚ୍ଛାରେ ହିଁ ଖେଳିବା ।...

ମୁଁ ଦେଖିପାରୁଛି ତୁମର ଏ ବୀଜ ରୂପ କମ୍ପିତ ହେଉଛି । ସ୍ଫୀତ ହୋଇ ଉଠୁଛି ବାହୁ ଯୁଗଳ । ଆୟତ ନେତ୍ରରୁ ଘନଘନ ବିଦ୍ୟୁତ୍‌ର ସ୍ଫୁରଣ ହେଉଛି । ମୁହୂର୍ତ୍ତ ମୁହୂର୍ତ୍ତକରେ ବିସ୍ଫୋରିତ ହୋଇ ଆଷାଢ଼ର ଘନକୃଷ୍ଣ ମେଘମାଳା ପରି ଏକ ଅଦ୍ଭୁତ ରୂପ ଆଚ୍ଛନ୍ନ କରିଯାଉଛି ପୃଥିବୀ ଏବଂ ଆକାଶ । ଅନନ୍ତ ମହାଶୂନ୍ୟରେ ରାଶିରାଶି ନକ୍ଷତ୍ରପୁଞ୍ଜ ସେ ଜଟା ଜାଲରେ ଲାଖି ଯାଉଛନ୍ତି । ସସାଗରା ପୃଥିବୀ ଜଳ ସ୍ଥଳ ଆକାଶଚାରୀ ଜୀବ ସକଳ ସ୍ଫୁଲିଙ୍ଗ ପରି ସେ ଘନ କୃଷ୍ଣ ବ୍ୟାପ୍ତି ହୋଇ ଯାଉଛନ୍ତି । ବର୍ତ୍ତୁଳା ପୃଥିବୀ ଏକ ସର୍ଷପବୀଜ ପରି ଲୁଚି ଯାଉଛି । ଦିଗ୍‌ଦିଗନ୍ତ ଆଚ୍ଛାଦିତ କରି ସମଗ୍ର ଜଗତ୍ ପ୍ରବାହକୁ ସ୍ତମ୍ଭିତ କରି ଏକମାତ୍ର ପରମ ବ୍ୟୋମ ନିସ୍ପନ୍ଦ ବିରାଜମାନ । ମନେ ହେଉଛି କଳାଶ୍ରୀମୁଖ ଅନନ୍ତ କାଳରାତ୍ରି ପରି ଗହନ ଗଭୀର ରୂପରେ ପରିବ୍ୟାପ୍ତ ହୋଇ ରହିଛି । ରାତ୍ରି ତରଳ ରୂପରେ ଅକଳନୀୟ ଦିଗ୍‌ବିଦିଗ୍-ଶୂନ୍ୟ ସମୁଦ୍ର ଆଲୋଡ଼ିତ ହେଉଛି । ମହା ଉର୍ମିମାଳା ଅନନ୍ତକୁ ପ୍ରାଧାବିତ ହେଉଛନ୍ତି । କାଳ ବକ୍ଷରେ ସ୍ପନ୍ଦନ ଜାତ ହେଉଛି । ଯୁଗାବ୍ଦିବ୍ୟାପୀ ବହୁ ସମ୍ବତ୍ସରମାନେ ସେ ଅନନ୍ତ ତିମିରାଚ୍ଛନ୍ନ କାଳସମୁଦ୍ରରୁ ଉତ୍ଥିତ ହେଉଛନ୍ତି । ଗତିଶୀଳ ହେଉଛନ୍ତି । ସମ୍ବତ୍ସରମାନେ କାହାର ଇଚ୍ଛାରେ ଚୂର୍ଣ୍ଣୀଭୂତ ହୋଇ ବିକୀର୍ଣ୍ଣ ହୋଇ ପଡୁଛନ୍ତି । ରେଣୁ ରେଣୁରେ ଆଲୋକ ପୁଞ୍ଜ ଉଦ୍ଭାସିତ ହୋଇ ଉଠୁଛି । ସହସ୍ର ସୂର୍ଯ୍ୟ ପ୍ରଜ୍ଜ୍ୱଳିତ ହୋଇ ମହାକାଶରେ ପ୍ରଚଣ୍ଡ ବେଗରେ ବିଘୂର୍ଣ୍ଣିତ ହେଉଛନ୍ତି । ତଥାପି କୌଣସି ଏକ ପ୍ରାକ୍‌ଅନୁଶାସନରେ ଏକ ବିଶ୍ୱମୟ ସୃତିକୁ ଆଶ୍ରୟ କରି ଛନ୍ଦୋବଦ୍ଧ ଜ୍ୟୋତିଷ୍କ ମଣ୍ଡଳମାନେ ସଂଗଠିତ ହୋଇ ଯାଉଛନ୍ତି । ପୁନଶ୍ଚ ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର ଯଥା ପୂର୍ବଂ ଅକଳ୍ପୟନ୍ ଉଦ୍ଭାସିତ ହେଉଛନ୍ତି । ମହାବ୍ୟୋମରେ ଅସଂଖ୍ୟ ଶୀର୍ଷମଣ୍ଡଳ, ଦଶଦିଶାରେ ପ୍ରସାରିତ ଅନନ୍ତ ବାହୁରେ ତାରା ନକ୍ଷତ୍ରରାଜି ଦିବ୍ୟାଳଂକାରରେ ପରିଶୋଭିତ ହେଉଛନ୍ତି । କଟି ଦେଶରେ ଅନ୍ତରୀକ୍ଷ, ପାଦ ଦେଶରେ ପୃଥିବୀ ନିମ୍ନାକାଶରେ ଅନନ୍ତ ପାଦ ପ୍ରସାରିତ କରି କିଏ ତୁମେ ପ୍ରକଟିତ ହୋଇଛ ? ସ୍ୱର୍ଗମର୍ତ୍ତ୍ୟ ପାତାଳ ଗୋଟିଏ ମାତ୍ର ପଦରେଣୁ ଗର୍ଭରେ ସମାହିତ ସ୍ତବ୍ଧ ହୋଇ ଯାଇଛନ୍ତି । ଦେବ ଗନ୍ଧର୍ବ ମାନବ ଏ ପରିବ୍ୟାପ୍ତିରେ କୁତ୍ରାପି ଚିହ୍ନିତ ହୋଇପାରୁ ନାହାନ୍ତି । କିବା ସ୍ତବ ଗାନ କରିବେ, କେଉଁ ଭାଷାରେ, କେଉଁ ଶବ୍ଦାୟନରେ, କେଉଁ ଭୂମିରେ ? ମୋର ଅସ୍ମିତା ବହୁକାଳୁ ବିଲୁପ୍ତ । ସଂବିତ୍ ଗର୍ଭରୁ ସଂଚିତ ଶବ୍ଦ ସବୁ ଏକତ୍ର ଅର୍ଥ ବହନ କରି ଅସ୍ଫୁଟ ସମର୍ପିତ ହେଉଛନ୍ତି । "ହେ ଅନନ୍ତ ଦେବେଶ, ଜଗନ୍ନିବାସ ! ଏ ଭୟଙ୍କର ବିମୂଢ଼କାରୀ ଲୀଳା ସମ୍ବରଣ କର । ସର୍ଷପ

ଗର୍ଭ ବିଦୀର୍ଣ୍ଣ କରି ସାନୁମାନ ହିମାଳୟକୁ ଆଉ ପ୍ରବେଶ କରାଅ ନାହିଁ । ବିଦୀର୍ଣ୍ଣ, ବିକୀର୍ଣ୍ଣ ସର୍ଷପର ସ୍ଥିତି ନାହିଁ ହିମାଳୟକୁ ଅନୁଭବ କରିବାକୁ । ସର୍ଷପକୁ କୃପା କରିବାକୁ ହେଲେ ତୁମେ ସ୍ୱୟଂ ସର୍ଷପ ହୋଇଯାଅ ପ୍ରଭୁ, ସମ ଭୂମିରେ ପ୍ରକଟ ହୁଅ । ଏ ନିଦାରୁଣ ପ୍ରଳୟଙ୍କର ବିଶ୍ୱରୂପ ସମ୍ବରଣ କର ।"

ମୋର ଶିରା ପ୍ରଶିରା, ସ୍ନାୟୁସ୍ପନ୍ଦନ, ରକ୍ତକଣିକାର ଗର୍ଭ ପର୍ଯ୍ୟନ୍ତ ପ୍ରଗାଢ଼ ବିସ୍ମୟରେ କମ୍ପମାନ । ଚକ୍ଷୁ, କର୍ଣ୍ଣ, ନାସା ଅବୟବାଦିର ସ୍ଥିତି ବିଷୟରେ ବିଶ୍ୱାସ ଅବଲୁପ୍ତ । ସ୍ୱତନ୍ତ୍ର ସତ୍ତାଟିଏ ମୁଁ ସ୍ପନ୍ଦିତ ହେଉଛି ବୋଲି ଅନୁଭବ ହେଉନାହିଁ । ...ଧୀରେ, ଅତି ଧୀରେ ଭୂକମ୍ପ ସ୍ଥିର ହୋଇ ଆସୁଛି । କିଏ ସେ ଟୋଳି ଧରୁଛି ଏ ଜ୍ୱରାକ୍ରାନ୍ତ ପୃଥିବୀକୁ ? ଏକ ସ୍ନିଗ୍ଧ ଭୁରୁ ଭୁରୁ ସୌରଭ ପ୍ରଲେପ ପରି ଜୀବନ ସଂଚାର କରୁଛି । ଅଙ୍ଗ ଅଙ୍ଗରେ ଚେତନା ଅଙ୍କୁରିତ ହେଉଛି । ମଧୁଗନ୍ଧରେ ଘ୍ରାଣ ଅଭ୍ୟନ୍ତରକୁ ସୁରଭିତ କରୁଛି । କର୍ପୂର କସ୍ତୁରୀ ବନମାଳାର ଗନ୍ଧ ଚେତନାକୁ ଉଜ୍ଜୀବିତ କରୁଛି । ଘଣ୍ଟ ଘଣ୍ଟା ନାଦ, ମାନବ କଣ୍ଠର ପ୍ରାର୍ଥନା କଳରବରେ ଚକ୍ଷୁ ପଲକ କମ୍ପିତ ହୋଇ ମୁକୁଳି ଯାଉଛି ।

ଅହୋଭାଗ୍ୟ ! ନୀଳାଦ୍ରି ଗମ୍ଭୀରାରେ ଆରତି ମହୋତ୍ସବ । ବାଙ୍କଚୂଳ ବେଶରେ ସିଂହାସନ ମଣ୍ଡନ କରି ଶୋଭା ପାଉଛ ପ୍ରଭୁ ! ଏଇତ ତୁମର ପ୍ରକଟିତ ଅବୟବ । ଏଇତ' ସେ ବହୁ ଯୁଗରୁ ସଞ୍ଚିତ ବନମାଳା । ଏଇତ' ସେ ପ୍ରିୟତମ ମାଧୁର୍ଯ୍ୟ ରୂପ !... କିଏ ସେ କର୍ପୂର ଆରତି ଟୋଳିଧରିଛନ୍ତି ? - ସେ କ'ଣ ପଦ୍ମଯୋନି ପ୍ରଜାପତି ? ଯେଉଁମାନେ କରପତ୍ର ଯୋଡ଼ି ବାରମ୍ବାର ଦଶଦିଗକୁ ନମସ୍କାର କରୁଛନ୍ତି ସେମାନେ କ'ଣ ଇନ୍ଦ୍ରାଦି ଦଶ ଦିଗପାଳ ? ବିଭିନ୍ନ ରୂପରେ, ବିଭିନ୍ନ ଭାବରସରେ, ବିଭିନ୍ନ ମୁଦ୍ରାରେ, ମନ୍ତ୍ରରେ ଯେଉଁମାନେ ଗଦ୍‌ଗଦ ହେଉଛନ୍ତି ସେମାନେ କ'ଣ ଛଦ୍ମବେଶୀ ଦେବଗଣ ? ସେଇମାନେ କ'ଣ ଏକାନ୍ତ ପ୍ରେମ ବିଧୁରା ଗୋପାଙ୍ଗନା ? ଧନ୍ୟୋଽସ୍ମି ! ଅହୋଭାଗ୍ୟ ପ୍ରଭୁ ! ମନୋବାଞ୍ଛା କଳ୍ପତରୁ ! ଏଣିକି ଯେତେ ରୁଷି ବସିଲେ ସୁଦ୍ଧା ଆଉ ଅପ୍ରକଟ ରହିପାରିବ ନାହିଁ । ତୁମର ଅନନ୍ତ ଲୀଳାରେ ସହଯୋଗୀ ହେବାକୁ ମୁଁ ପ୍ରତିଶ୍ରୁତି ଦେଉଛି । ଏ ମାଧୁର୍ଯ୍ୟ ରୂପରେ ଥରେ ମାତ୍ର ଅନୁଗୃହୀତ ହେବା ଆଶାରେ ମୁଁ ତୁମର ବିଶ୍ୱ ରୂପର ପ୍ରକମ୍ପ ସହସ୍ରବାର ସହନ କରିବାକୁ ପ୍ରସ୍ତୁତ ।

ନ କାଙ୍କ୍ଷେ ସୁଖସୌଭାଗ୍ୟଂ ନ ଚ ବାରାଣସୀଗତିମ୍ ।
ଅଲଂଯଶଃ ଅଲଂକୀର୍ତ୍ତିଂ ଅଲଂ ଗୌରବମାଳିକାଂ ॥

ପ୍ରୟାଣକାଳେ ମନସା ତବସୌମ୍ୟରୂପମ୍ ।
ନାମାମୃତଂ ତୁ ଜିହ୍ୱାଗ୍ରେ ହୃଦି ପାଦପଦ୍ମମ୍ ॥
ଭିକ୍ଷାଂ ଦେହି ପ୍ରାର୍ଥୟାମି ତବ ଦ୍ୱାରଦେଶେ ।
ଦେହି କିଞ୍ଚିତ୍ ଭବଦୀୟ କୃପା କଟାକ୍ଷମ୍ ॥

# ⨀

ଭାବିଥିଲି ଲକ୍ଷ କୋଟି ଜୀବଙ୍କ ସହିତ ମୋ ଦୁଃଖରେ ମୁଁ ରହିଥିବି, କାରଣ ତାହାହିଁ ତୁମ ପ୍ରଶାସନରେ ମୋର ଭାଗ୍ୟଲିପି । ତୁମକୁ ଅପେକ୍ଷା କରିବାର ଅର୍ଥ କିଛି ନାହିଁ; ବରଂ ତା' ଦ୍ୱାରା ମୋର କ୍ଲେଶ ଅଧିକତର ହେବାର ମୁଁ ଅନୁଭବ କରୁଛି । ତୁମେ ଆସିବ ଆସିବ ବୋଲି ଅନନ୍ତ ପ୍ରତୀକ୍ଷାରେ ମୋର ସାରା ଜୀବନ ବିଡ଼ମ୍ବିତ ହୋଇ ଆସିଛି । ଆଶାର ବାଲିଘର ତୋଳିବା ଏବଂ ସହସ୍ରେ ଥର ସମୁଦ୍ର ଲହଡ଼ିରେ ତାହା ଭୁଶୁଡ଼ି ପଡ଼ିବାର ଦୁଃଖ ତୁମେ ତ' ବୁଝିବ ନାହିଁ । ଆପ୍ତକାମ କେମିତି ବୁଝିବ ଆଶା ନିରାଶାର ନିଆଁପାଣି ଖେଳ ? ସ୍ଥିର କରିଥିଲି ଯେ ତୁମ ଆଡୁ ମୁହଁ ଫେରେଇ ଆଣି ପାରିଲେ ଅନ୍ତତଃ ଗୋଟାଏ ଜ୍ୱାଳାରୁ ତ' ତ୍ରାହି ମିଳିଯିବ ! - କିନ୍ତୁ ତାହା ହୋଇପାରିଲା ନାହିଁ ।

ତୁମ ପାର୍ଶଦ ଲୋକେ ଆସି ପରମ ବିଶ୍ୱାସରେ ଯାହା କହିଲେ ସେଥିରେ ମୋର ପ୍ରତ୍ୟୟ ହେଲା ନାହିଁ । ସେମାନେ କିନ୍ତୁ ଆଖି ଛୁଇଁ ରାଣ ନିୟମ ଖାଇ ବାରମ୍ବାର ସେଇକଥା ହିଁ କହିଲେ ।

ମୁଁ ସେ କଥା ଶୁଣି ହତ-ଚକିତ ହୋଇଗଲି । ମୋ ପ୍ରାଣପିଣ୍ଡ ଦ୍ରବୀଭୂତ ହୋଇଗଲା । ଶରୀର କମ୍ପିଲା ଦୁରୁଦୁରୁ ହୋଇ । ରୋମ ଟାଙ୍କୁରିଲା । ଉଜାଣି ଠେକିଲା ସମୁଦ୍ର । ମୋ ଆଖିରେ ପୁଣି ଶ୍ରାବଣ ଘୋଟି ଆସିଲା । ମୁଁ ସେମାନଙ୍କ ପାଦ ଧରି ଭୂଇଁରେ ଲୋଟି ପଡ଼ିଲି । ମୋର ଚନ୍ଦ୍ରସୂର୍ଯ୍ୟ ଖସି ପଡ଼ିଲେ ଆକାଶରୁ ।

ତୁମକୁ ମୁଁ କହିପାରୁ ନାହିଁ ସେମାନେ ଯାହା କହିଲେ । ତୁମେ ଯଦି କେଉଁଠି ଥାଇ ମୋତେ ଶୁଣୁଥାଅ ସେଇଠି ଥାଇ କହିଦିଅ ଯେ ସେ କଥା ମିଛ । - ଖାଲି ସେମାନଙ୍କ ମନଗଢ଼ା ଫନ୍ଦି; ମୋତେ ସେ ଅଗ୍ନି ବଳୟକୁ ଓଟାରି ନେବାର ଷଡ଼ଯନ୍ତ୍ର ! ତୁମର ଅସ୍ୱୀକାର ଶୁଣି ଦେଲେ ମୁଁ ସେମାନଙ୍କର ମୁକାବିଲା କରି ପାରିବି । ତାଙ୍କୁ ମୋ ସାମ୍ନାରୁ ବିଦାୟ କରି ଦେଇ ପାରିବି । ଅପେକ୍ଷା କରି ପାରିବି ମୋ ପ୍ରାଣ-

ସମୁଦ୍ର ଥୟ ହେବା ପର୍ଯ୍ୟନ୍ତ । ତା'ପରେ ଫେରିଯାଇ ପାରିବି ମୋର ଛୋଟଛୋଟ ଦୁଃଖର ଖେଳ ଘରକୁ । ଅନ୍ତତଃ ତୁମ ଜ୍ୱାଳାରୁ ତ' ତ୍ରାହି ପାଇଯିବି !

କିନ୍ତୁ ତୁମେ ତ କିଛି କହିବ ନାହିଁ । ଅବାଧ ଆକାଶ ପରି ତୁମେ ମୌନ ହିଁ ରହିଯିବ । ସେଉଠୁ ପ୍ରତିଧ୍ୱନି ସୁଦ୍ଧା ଫେରି ଆସେ ନାହିଁ । ସେଇ ତ' ମୋ ଦୁଃଖ । ତଥାପି ତୁମକୁ ନ କହି ରହିପାରୁନାହିଁ ।

ସେମାନେ ପ୍ରଥମେ ମୋର ସ୍ତୁତି ଗାନ କଲା ପରି ଲାଗିଲା । ମନେ ହେଲା ବାରମ୍ବାର ମୋତେ ଛୁଇଁ ସେମାନେ ମୁଣ୍ଡରେ ବୋଳି ହେଉଥିଲେ । କହିଲେ ମୋ ଭଳି କାହାର ଭାଗ୍ୟ ସତେ ! - ତାପରେ କହିଲେ... କହିଲେ ଯେ ତୁମେ କୁଆଡ଼େ ମୋତେ ଅପେକ୍ଷା କରି ବସିଛ; କୁଆଡ଼େ ମୋ ପାଇଁ ତୁମେ ଉଦାସ ଦେଖାଯାଅ !!

ନାଁ, ନାଁ ଏଇଟା କ'ଣ ସମ୍ଭବ ? ତୁମେ ଆସି ମୋ ଦୁଆରୁ ଫେରି ଯାଉଛ - ଏଇଟା କ'ଣ ସମ୍ଭବ ? ମୁଁ ପରା ଅହରହ ତୁମକୁ ଅପେକ୍ଷା କରି ବସିଛି !

...ତୁମେ କୁଆଡ଼େ ରାତିର ନିସ୍ତବ୍ଧ ପ୍ରହରରେ ଚୁପ୍‌ଚାପ୍ ଆସି ମୋ ଦୁଆରେ କରାଘାତ କର ! - ମୁଁ କେମିତି ଶୁଣି ପାରେ ନାହିଁ ? - ଜାଣିପାରେ ନାହିଁ ତୁମେ ଆସି ଠିଆ ରହିଛ ବୋଲି ? ମୁଁ କୁଆଡ଼େ ନିଶ୍ଚଳ ପଡ଼ିଥିଲା ବେଳେ ତୁମେ ଆସି କରାଘାତ କର । - କାହିଁକି ? - ତୁମେ କ'ଣ ଜାଣନା ମୋର ବିବଶତା, ମୋର ଅସହାୟତା ! ମୁଁ ଯଦି ଶୋଇ ଯାଇଥାଏ ତୁମେ ତୁମ ମାଲିକପଣରେ ମୋତେ ଓଟାରି ଠିଆ କରିଦିଅ ନାହିଁ କାହିଁକି ? ମୋ ସ୍ୱପ୍ନ ଭୂମିରେ ପ୍ରବେଶ କରି ମୋର ଅଭିଳାଷ ପୂର୍ଣ୍ଣ କରିଦିଅ ନାହିଁ କାହିଁକି ? - କାହିଁକି ଏତେ ଅବିଚାର କର ମୋ ଉପରେ, ନିଜେ ନିଜ ଉପରେ ?

...ସେମାନେ ପୁଣି କହିଲେ ଯେ ମୁଁ କୁଆଡ଼େ ଗଙ୍ଗା ଘାଟରେ ଚନ୍ଦନ ଘୋରୁଥିଲା ବେଳେ ତୁମେ ତିଳକ କରି ଚାଲିଯାଇଛ, ମୁଁ ଚିହ୍ନି ପାରି ନାହିଁ । ହା, ହତୋଽସ୍ମି ! ମୁଁ କ'ଣ ଏଡ଼ିକି ଅନ୍ଧ ? ମୋ' ଆଖିରେ ସିନା ପରଳ ମାଡ଼ି ରହିଥିଲା; ମୋର ପ୍ରତି ପ୍ରଶ୍ୱାସରେ ମୁଁ କ'ଣ ସେ ସୌରଭକୁ ବାରି ପାରିଲି ନାହିଁ, ପବନରେ ସେ ପାରିଜାତ ସ୍ପର୍ଶକୁ ଚିହ୍ନିପାରିଲି ନାହିଁ ? - ମୋର ପ୍ରତି ଲୋମକୂପର ଚକ୍ଷୁ କ'ଣ ମୁଦ୍ରିତ ଥିଲେ ।

ମୁଁ ସକାଳୁ ଅନ୍ୟମନସ୍କ ଚାଲିଗଲା ବେଳେ ତୁମେ ତରୁଣ ଚମ୍ପା ଗଛଟିଏ ହୋଇ ଠିଆ ହୋଇଥିଲ । ଅଦିନ ଚମ୍ପାର ମହକ ମୋ ପଛେ ପଛେ ବଂଶୀଧ୍ୱନି ପରି ଗୋଡ଼େଇ ଯାଇଥିଲା, ଅଥଚ ମୁଁ ଫେରି ଚାହିଁ ନ ଥିଲି । ଭାର ଭାର ବଉଳର ବାସ୍ନା

ଗହଳିରେ ଉଚ୍ଚକିତ ତାନ ତୋଳୁଥିଲ; ମୁଁ ଭାବିଲି ଶୃଙ୍ଗାରୀ କୋଇଲିଟାଏ ଡାକୁଛି ତା'ର ସାଥୀକୁ ବୋଲି ।

...ଅନ୍ଧାର ରାତିରେ ଆସ୍ତେ ପଛରୁ ଛୁଇଁ ଦେଇଥିଲ । ମୁଁ ଭାବିଲି ପବନରେ ଯୁଇଫୁଲ ଡାଳ ଦୋହଲି ଯାଇଥିଲା ! ଜହ୍ନ ରାତିରେ ବିସ୍ତୀର୍ଣ୍ଣ ନଦୀପଠା ସେପାରିରୁ କ୍ଷୀଣ ମଧୁର ଡାକଟିଏ ଶୁଭିଥିଲା । ମୋତେ ଜଣାଗଲା ଚକ୍ରବାକ ହୋଇଥିବ ପରା !

...ସେ ଦିନ ଗ୍ରୁଦ୍ରାନ୍ତ ଖରାବେଳେ ମୁଁ ଝୋଲାମାରି ପଡ଼ି ଯାଉଥିଲା ବେଳେ କଳସୀ ନୁଆଇଁ ମୋ ଆଞ୍ଜୁଳାରେ ଅମୃତ ଢାଳି ଦେଇଥିଲ । ମୁଁ ଭାବିଲି ସେ ସେଇପାଖ ଗାଁର ପାଣି କାଖେଇ ଯାଉଥିବା ଝିଅଟିଏ !

...କୋଳିଖିଆ ବୟସରେ ଜଙ୍ଗଲରେ ବାଟ ହୁଡ଼ି ଗହୀର ଅରଣ୍ୟକୁ ପଶିଯାଇଥିଲି । ସେ ଗଛ ଗହଳରୁ ଚିରା ମଇଳା ଲୁଗା ପିନ୍ଧିଥିବା ଝୁମ୍ପୁରା ମୁଣ୍ଡିଆ ହସକୁରା କାଳିଆ ମଣିଷଟି ମୋ ହାତ ଧରି ଆଣି ଆମ ଘର ଦୁଆରେ ଛାଡ଼ିଦେଇଥିଲା । ମୁଁ ପଛକୁ ଫେରି ଚାହିଁ ନ ଥିଲି । ମୁଁ କେମିତି ଜାଣିବି ତା' ଆଖିରେ ସୂର୍ଯ୍ୟ ଝଟକୁ ଥିଲା; କେମିତି ଜାଣିବି ତା'ର ସେ ଧୋବ ଫର ଫର ହସରେ ଅଣିମା ଲଘିମାଦି ଅଷ୍ଟ ଐଶ୍ୱର୍ଯ୍ୟ ବୃଷ୍ଟି ହେଉଥିଲା !

...ଉଠାଣି ରାସ୍ତାରେ ମୋତେ ଆଉ ମୋର ଭାରି ଭାରି ପେଟରାମାନଙ୍କୁ ଓଟାରି ଆଣିଥିଲା ତା' ରିକ୍ସାରେ ସେ । ଝାଳ ସରସର ଦେହ । କପାଳରୁ ନିଗିଡ଼ି ପଡୁଥିବା ପାଣିକୁ ପୋଛି ପକେଇ ସେ ହାତ ପତେଇଥିଲା ମୋର କାଗଜ ଖଣ୍ଡକ ପାଇଁ । ...ନିଶ ଗଜେଇ ଆସୁଥିବା ଶ୍ୟାମଳ ତରୁଣଟିଏ । ମୋତେ ଚାହିଁ ଅଛ ହସିଥିଲା । ମୁଁ କେମିତି ଜାଣିବି ତୁମେ ହିଁ ମୋ ଦରିଦ୍ରପଣକୁ, ମୋର ଦେଖି ନ ପାରୁଥିବା ଅନ୍ଧପଣକୁ, ମୋର ନ ପାରିଲା ମନ, ବୁଦ୍ଧି ଅହଂକାରକୁ ଦେଖି ସେମିତି ହସିଥିଲ !

ସେଦିନ ଅଣଅଶ ପବନ ବହୁଥାଏ । ବର୍ଷା ବତାସୀରେ ଉତ୍‌ଫଣ ନାଗ ପରି ଗର୍ଜୁଥାଏ ସମୁଦ୍ର । ମୁଁ ଶୋଇ ରହିଥାଏ ନିଶ୍ଚିନ୍ତ । ଛାତ ଭେଦି ପାଣି ଝରୁଥାଏ । କାଳେ ମୋ ଉପରେ ପଡ଼ିଲେ ମୋ ନିଦ ଭାଙ୍ଗିଯିବ ବୋଲି ସାରା ରାତି ପ୍ରଳୟକୁ ଆଡ଼ କରି ଦେଇ ହାତରେ ସରାଟିଏ ଧରି ଯେ ଛିଡ଼ା ରହିଥିଲେ, ମୁଁ ଆଖି ମେଲି ଚାହିଁବା ପୂର୍ବରୁ ଯେ ନିରବ ଅପସରି ଯାଇଥିଲେ, ସେ ତୁମେ ବୋଲି ମୁଁ କେମିତି ଜାଣିବି ? – ମୋ ସତ୍ତାର ବିଭିନ୍ନ ଭୂମିରେ ମୁଁ ଅଣାୟତ୍ତ ଜଳଭଉଁରୀ ଆଡ଼କୁ ଟାଣି

ହୋଇ ଗଲାବେଳେ ମୋ ଅଜ୍ଞାତରେ ଯେ ମୋତେ ଛାଣି ଆଣି କୂଳରେ ଠିଆ କରାଇ ଦିଅନ୍ତି ସେ ତୁମେ ବୋଲି ମୁଁ କେମିତି ଜାଣିବି ?

...ପହଁରା ନ ଶିଖି ପାଣିକୁ ଡେଇଁ ପଡ଼ିଥିଲି । ମୋ ଭିତରେ ବାହାରେ ପାଣି ଏକାକାର ହୋଇ ଯାଉଥିଲା ବେଳେ, ଆଖି ଉପରକୁ ଅନ୍ଧାର ନଇଁ ଆସୁଥିଲା ବେଳେ ଗାମୁଛାଟାଏ ପକାଇ ସେ ମୋତେ ଓଟାରି ଆଣିଥିଲେ ଗୋଟାଏ ଶୋଷି ନେଉଥିବା ଅକାତକାତ ଗହୀର ଭିତରୁ ସବୁଜ ଘାସ ଉପରକୁ, ପରିଚିତ ଆକାଶ ଆଉ ପୃଥିବୀକୁ । ମୁଁ ତାଙ୍କୁ ଭାବିଥିଲି ନିଜେ ପହଁରା ଜାଣି ନ ଥିବା, ଅକସ୍ମାତ୍ ସେଇଠି ପହଞ୍ଚି ଯାଇଥିବା ମୋ' ମାମୁ ବୋଲି । କେମିତି ବା ଜାଣିବି ତୁମେ ମୃତ୍ୟୁ ସାଙ୍ଗରେ ନିଜେ ଲଢ଼ି ମୋତେ କାଳଫାଶରୁ ମୁକ୍ତ କରି ଆଣିଥିଲ ! ମୋ ମୁହଁକୁ ଚାହିଁଥିଲ ସକାଳର ସୂର୍ଯ୍ୟପରି; ମୋର ଆତଙ୍କିତ ପ୍ରାଣ ପକ୍ଷୀକୁ ଆଉଁସି ଦେଇଥିଲ ମଳୟସ୍ପର୍ଶରେ ?

...ମୁଁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ ଯେ ସେଦିନ ଅତର୍କିତ ଭାବରେ ମୋ ଉପରେ ଯେଉଁ ବଜ୍ର ପଡ଼ିଥିଲା, ମୋତେ ଏବଂ ମୋର ଅଧିଷ୍ଠାନ ବିଦୀର୍ଣ୍ଣ କରିଥିଲା, ତାହା ଅଜ୍ଞାତ ଶୂନ୍ୟରୁ ତୁମ ହାତରୁ ହିଁ ଖସିଥିଲା । ବରଂ ମୁଁ କ୍ଲାନ୍ତ, ଘର୍ମାକ୍ତ ହୋଇ ମୋ କ୍ରୁଶ ବହନ କରି ଗଲାବେଳେ ମୋ କାନ୍ଧରୁ ସେ ଗୁରୁଭାର ଓହ୍ଲେଇ ନେଇଥିଲ ତୁମେ । ମୋତେ ସେମାନେ କଣ୍ଟା ପିଟିବା ବେଳେ ତୁମେ ହିଁ ମୋ ପାଖରେ ଠିଆ ରହିଥିଲ, ଅନ୍ଧାରରେ ଅଶ୍ରୁମୋଚନ କରିଥିଲ ।

ମୋ ପାଇଁ ତୁମେ ଅପେକ୍ଷା କରିଥାଅ; ମୋ ପାଖେ ପାଖେ ଭ୍ରମରବତ୍ ଗୁଞ୍ଜରୁଥାଅ, ଅଥଚ ମୁଁ ହିଁ ତୁମ ଅନ୍ୱେଷଣରେ ଆଜୀବନ ବିଫଳ ପ୍ରୟାସ କରୁଛି ବୋଲି ଅଭିମାନ କରି ବସିଛି । ମୁଁ ସିନା ଦେଖିପାରୁ ନାହିଁ, ତୁମ ମଝିରେ ଅନନ୍ତ ବ୍ୟବଧାନକୁ ଅତିକ୍ରମି ଯିବାର ସାମର୍ଥ୍ୟ ମୋର ନାହିଁ, କିନ୍ତୁ ତୁମେ ତ' ଅନାୟାସ ମୋର ଅନ୍ଧ ପଟଳକୁ ବିଦାରଣ କରିପାରନ୍ତ । ମୋ ଆଗରେ ଉଦ୍ଭାସିତ ହୋଇ କହିପାରନ୍ତ, "ହେଇ ଦେଖ୍ ମୁଁ ତୋ ପାଇଁ ପ୍ରକଟ ହୋଇଛି । ତୋ ପ୍ରାର୍ଥନାରେ ସୂର୍ଯ୍ୟଦେବ ସୁନାର ଢାଙ୍କୁଣିଟିକୁ ଅପସାରିତ କରିଛନ୍ତି । ଏଇ ଦେଖ୍ ମୋର ନିରାବରଣ ସତ୍ୟ, ମୋର କଲ୍ୟାଣତମ ରୂପ ।"

ମୁଁ ସେତିକିରେ କୃତାର୍ଥ ହୋଇଯାଆନ୍ତି । ମୋର ମନୋରଥ ସରିଯାଆନ୍ତା; ମୁଁ ସରି ଯାଆନ୍ତି । ଜନ୍ମଜନ୍ମାନ୍ତରର ତପସ୍ୟା ସିଦ୍ଧ ହୋଇଯାନ୍ତା; ପ୍ରତୀକ୍ଷାର ପରିସମାପ୍ତି ଘଟନ୍ତା ।

ତୁମେ ପ୍ରକଟ ହୋଇଥାନ୍ତ । ମୋର କମ୍ପିତ ସତ୍ତା ଗୁଞ୍ଜରୁଥାନ୍ତା- "ଜନମ ଜନମ ସଖି, ରୂପ ନିହାରିନୁ, ନୟନ ନ ତିରପିତ ଭେଲ ।"

ଏଥର ତୁମେ ବଡ଼ ଦେଉଳରୁ ବଡ଼ଦାଣ୍ଡକୁ ଅବତରି ଆସିଲାବେଳେ ମୁଁ ସର୍ବାଗ୍ରେ ଠିଆ  ରହିଥିବି । ତୁମେ ଯେ ମୋତେ ଅପେକ୍ଷା କରିଛ ତା'ର ପ୍ରମାଣ ଦେଇ ପାରିବ ? ମୋତେ ବାହୁ ପ୍ରସାରି କୋଳାଗ୍ରତ କରିପାରିବ ? ଚକ୍ରମୟକାଳ, ବର୍ତ୍ମମୟ ଜୀବନର ରନ୍ଧ୍ରମୟ ସମ୍ପର୍କର ଜାଲ ଭେଦି ତୁମେ ପ୍ରକଟ ହୋଇପାରିବ ? ନନ୍ଦିଘୋଷର ଶିରା ଉପଶିରା, ଗ୍ରନ୍ଥିରେ, ଚକ୍ରରେ, ଚିରାଳରେ, ନିଷ୍ପଲକ ଚାହିଁଥିବା ଲକ୍ଷଲକ୍ଷ ଚକ୍ଷୁର କନିକିକାରେ ତୁମେ ହିଁ ତୁମେ ଦେଖା ଦେଇ ପାରିବ ??

ତୁମ ପାର୍ଶଦମାନଙ୍କୁ ଥରେ ଶୁଣି ସାରିବା ପରେ ମୋର ଆଉ ନିଷ୍କୃତି ନାହିଁ । ମୁଁ ଆଉ ତୁମ ଘେରରୁ ମୁକୁଳିବାର ଅବକାଶ ବି ନାହିଁ । ତୁମେ କେତେବେଳେ କେଉଁ ରୂପରେ ମୋ ପାଖରେ ଅପେକ୍ଷା କରି ଠିଆ ରହିଥିବ, ଏଇ ଚମକରେ ମୁଁ ଅହରହ ଅସ୍ଥିର, ବିହ୍ୱଳ । ପଶୁପକ୍ଷୀ, ତରୁତୃଣ, ଜଡ଼ଚେତନ ସବୁଠି ତୁମେ ମୋ ଆଡ଼େ ଚାହିଁ ରହିଥାଇ ପାର ! ...ମୋ ମୁଣ୍ଡ ଉପରେ ଥରଟିଏ ଡାକି ଉଡ଼ି ଯାଇଥିବା ଶୁକପକ୍ଷୀଟି ହୁଏତ ତୁମେ  ! ଝଙ୍କା  ପବନରେ ଈଷତ୍ ଦୋହଲୁ ଥିବା ତାଳ ତୃଣ ତୁମେ । ଅନନ୍ତକାଳରୁ ନିଶ୍ଚଳ ପଡ଼ିଥିବା ସେ ଗୋଟାଳ ପାହାଡ଼ ତୁମେ । ମୋ ପାଖରେ ବସିଥିବା ମୋର ପରିବାର ବର୍ଗ, ସ୍ତ୍ରୀ, ପୁତ୍ର କନ୍ୟା, ବାପ, ମା' ପିତୃକୁଳ, ସମସ୍ତଙ୍କ ମୁହଁରେ ମୋ ପ୍ରତି ସ୍ନେହ ଆଦର । ସମସ୍ତଙ୍କ ଆଖିରେ ମୋ ପାଇଁ ତୁମର ହିଁ ପ୍ରତୀକ୍ଷା !

ସେ ଅପରିଚିତ ଜନ-ସ୍ରୋତ  ! ସେ ଶଙ୍ଖାଶାମୁକା ବିକାଳୀ, ସେ ତରୁଣତରୁଣୀ, ସମୁଦ୍ର ପାଣିକୁ ମୁଣ୍ଡରେ ଛିଞ୍ଚି ହେଉଥିବା ସେ ପରିଣତ ବୟସର ବୁଢ଼ାବୁଢ଼ୀ; ତାଙ୍କ ଚାରି ପାଖେ କୁରଙ୍ଗ ଶିଶୁ ପରି ଡେଇଁ ବୁଲୁଥିବା ସେ ଦୁଇଟି ପିଲା -  ଏମାନଙ୍କୁ ମୁଁ ସହଜରେ ଚାହିଁ ପାରୁଛି ତ ! କାରଣ ସେମାନେ ନିଜ ନିଜ ପରିଧିରେ ନିମଗ୍ନ । ତାଙ୍କୁ କାହାରି ପ୍ରତୀକ୍ଷା ନାହିଁ । ଅନ୍ତତଃ ସେ ଅନନ୍ତ ପ୍ରତୀକ୍ଷମାଣ ଆଖି ତ ମୋତେ ଚାହିଁ ରହି ନାହିଁ !

ସେ ଅପରିଚିତ ଘେର ଭିତରେ ମୁଁ ନିଜକୁ ନିର୍ବିଘ୍ନ ମନେ କରୁଥିବା ବେଳେ, ସେ ସମସ୍ତେ ମୋ ଉପରକୁ ମଡ଼େଇ ହୋଇ ପଡୁଛନ୍ତି । - ବୁଢ଼ାବୁଢ଼ୀ ଯୋଡ଼ିକ ମୋତେ ଚାହିଁ, ସମ୍ଭାଷୁଛନ୍ତି, "କିରେ, ତୁ ଏଠି ବଇଛୁ ? - ଚିହ୍ନି ପାରୁନୁ  - ଇଏ

ପରା ତତେ ଖୋଜି ଖୋଜି ନୟାନ୍ତ ।" ପିଲାଏ ମୋ ଗଳାରେ ବାହୁ ବଢ଼େଇ ଦେଉଛନ୍ତି । ତରୁଣ ତରୁଣୀ ଆସି ପାଖରେ ବସୁଛନ୍ତି । କିଏ ହାତ ଧରି ପକଉଛି, କିଏ ଓଠ ଧରି ପକାଉଛି- "କାହିଁ ଥିଲ ତୁମେ ? ତୁମକୁ ଖୋଜି ଖୋଜି ପରା ଏ ଆଖିରୁ ପାଣି ମରି ଗଲାଣି ।"

ସେ ଶଙ୍ଖ ଶାମୁକା ବିକାଳୀ ମୁହଁକୁ ଚାହିଁ ହସୁଚି, ସତେ ବା ଅନନ୍ତକାଳର ପରିଚୟ ମୋ ସାଙ୍ଗରେ ତା'ର । କହୁଛି, "ଏ ମାଳି ରଖିବେ ପିଲାଙ୍କ ପାଇଁ । ମୁଁ ପରା ଆପଣଙ୍କୁ ଟାକି ବସିଛି । ଆପଣ ମତେ ଚିହ୍ନିପାରୁ ନାହାନ୍ତି ସିନା, ମୁଁ ଠିକ୍ ଚିହ୍ନିଛି ।"

ମୁଁ ସେ ଗଭୀର ଅକାତକାତ ମୁହୂର୍ତ୍ତରେ ଥରଥର କମ୍ପୁଥିବା ବିହ୍ୱଳ ନିର୍ବାକ୍ ବିଲୀନ ହୋଇଯାଉଥିବା କରକା ବିନ୍ଦୁଟିଏ । ମୁଁ ଆଖିଫିଟେଇ ବାହୁ ପ୍ରସାରି ଦେଇଛି ସମର୍ପିତ ମୁଦ୍ରାରେ । - ଏତେ ରୂପରେ, ଏତେ ଛଳରେ ମୋତେ ବେଢ଼ି ରହିଛ ? ମୁଁ ତୁମକୁ ଚିହ୍ନ ନାହିଁ ବୋଲି କହୁଛ ? ହେଇ ତ' ତୁମେ ।। - ମୋତେ ଟୋକି ନେଉ ନାହିଁ ?

ଶଙ୍ଖ ଶାମୁକା ବିକାଳୀ ଅପସରି ଯାଉଛି ମାଳି ଝମଝମ କରି ଅନ୍ୟ ଗରାଖଙ୍କ ପାଇଁ । ତରୁଣ, ତରୁଣୀ, ବୁଢ଼ାବୁଢ଼ୀ, ପିଲାମାନେ ଘୁଞ୍ଚି ଯାଉଛନ୍ତି । ସେମାନଙ୍କ ଅପରିଚିତ ପିଠି ମୋ ଆଡ଼କୁ ଦେଖେଇ । ଡାକିଲେ ଶୁଣୁ ନାହାନ୍ତି; ଶୁଣିଲେ ଚାହୁଁ ନାହାନ୍ତି । ଦୂରକୁ ଦୂରକୁ ଘୁଞ୍ଚି ଯାଉଛି ସେ ଫେନାୟିତ ସମୁଦ୍ର; ସେ ଧୂସର ତାରା ବିହୀନ ଆକାଶ, ସେ ଅଗଣିତ ଖୋଜ-ଚିହ୍ନିତ ବିସ୍ତୀର୍ଣ୍ଣ ବେଳାଭୂମି ।

ଶୁଣ, ପ୍ରଭୁଙ୍କ ପାର୍ଶଦମାନେ ! ମୁଁ ସଂସାରର ଏଇ ସତ୍ୟ କଥା ହିଁ କହୁଥିଲି । ଏଠି ମୁଁ ଯାହାକୁ ହାତ ବଢ଼େଇଛି, ସେ ଘୁଞ୍ଚି ଯାଇଛି । ମୁଁ ଏମିତି ଏଇ ଅପରିଚିତ ପୃଥିବୀରେ କେବଳ ସେଇ ଜଣେ ମାତ୍ର ଘନିଷ୍ଠ ବନ୍ଧୁକୁ ପାଇବି ପାଇବି ବୋଲି ପ୍ରତୀକ୍ଷା କରିବସିଛି । ...ତଳକୁ ଚାହିଁଲେ ନିଷ୍ପନ୍ଦ ଗୋଡ଼ି ମାଟିର ପୃଥିବୀ; ଉପରକୁ ଚାହିଁଲେ ଅକଳନୀୟ ନିର୍ମମ ମହାବିସ୍ତାର ମଝିରେ ଯେଉଁ ରେଖାଏ ଧୂଆଁ ଭିତରେ ଭାସମାନ ରୂପଗୁଡ଼ିକ ପହଁରି ବୁଲୁଛନ୍ତି ସେମାନେ ସବୁ ଏକ ଅଦୃଶ୍ୟ ପ୍ରବାହରେ ତଡ଼ି ହୋଇ ଯାଉଥିବା ଶୁଖିଲା ପତ୍ରଗୁଡ଼ିଏ ।

ଏଠି କେହି କାହାକୁ ଚିହ୍ନନ୍ତି ନାହିଁ । ସେ କାହାନ୍ତି, ସେ କାହାନ୍ତି ବୋଲି ଅସଂଖ୍ୟ ଭକ୍ତ ଜ୍ଞାନୀ, ଆର୍ତ୍ତ, ଜିଜ୍ଞାସୁ ଆସି ଖୋଜି ଚାଲିଗଲେଣି । ମୁଁ ମୋ ମର୍ମେ

ମର୍ମେ ସେଇ କଥାହିଁ ଦୋହରାଉଛି । ତାଙ୍କୁ ଆରୋପ କରି ଜଡ଼କୁ ଚେତନ କରୁଛି । ଚେତନକୁ ଆପଣାର କରୁଛି । ଆପଣାର ଭାବି କୋଳାଗ୍ରତ କଲାବେଳେ ସେ ଭାସମାନ ମେଘଖଣ୍ଡ ପରି କୁଆଡ଼େ ଉଭାନ୍ ହୋଇଯାଉଛନ୍ତି ।

ମୁ ନିଜ ଭାବନାରେ ଏହିପରି ବାରମ୍ବାର ବିଡ଼ମ୍ବିତ ହେଲା ପରେ, ସେ ଅସମ୍ଭବକୁ ଅପେକ୍ଷା ନ କରି ଜଡ଼ରେ ଜଡ଼ ହୋଇ ଯିବାକୁ ସ୍ଥିର କଲାବେଳେ ସେ ଅନନ୍ତ ପ୍ରତୀକ୍ଷାର ଜ୍ୱାଳାରୁ ତ୍ରାଣ ଖୋଜିଲାବେଳେ ତୁମେ ଆସି ଅସ୍ଥିର କରି ଦେଇଛ । କହୁଛ ଯାହା କେହି ବିଶ୍ୱାସ କରି ପାରିବ ନାହିଁ- କ'ଣ ନା ସେ ନିଜେ କୁଆଡ଼େ ଅପେକ୍ଷା କରି ବସିଛନ୍ତି । ଅହୋ, ଭାଗ୍ୟ ! - କଳ୍ପନାର ତନ୍ତୁଟିଏ ହେଲେ ସୁଦ୍ଧା କେଡ଼େ ସୁକୁମାର, ପ୍ରଲୁବ୍ଧ କଲା ଭଳି ଚନ୍ଦନ-ଶୀତଳ, ସୁରଭିତ, ସ୍ନିଗ୍ଧ ଭାବନାଟିଏ !

ବଡ଼ଦାଣ୍ଡ ମଝିରେ ଯାତ୍ରା ଲୀଳାରେ ବିଜେ କରିଛନ୍ତି ପ୍ରଭୁ ! ଆଜି, ଅଧବାଟରେ ଛାଉଣି ପଡ଼ିଛି । ରାତିରେ ଧୂପ ଉଠାଣି ନୀତି ବଢ଼ିଗଲାଣି ନା' କଅଣ ! ରଥ ଚାଳ ଉପରେ କାଁ ଭାଁ ସେବକ, ବଡ଼ଦାଣ୍ଡରେ କାଁ ଭାଁ ଭକ୍ତ । ଘଣ୍ଟ ମହୁରୀ ମର୍ଦ୍ଦଳର ଗହଗହ ନାଦ ନାହିଁ, ଭିଡ଼ାଭିଡ଼ି ଗହଳି ନାହିଁ । ନେମିଘୋଷ ନାହିଁ ! ଆକାଶ ମେଘାଚ୍ଛନ୍ନ । ପବନ ସ୍ତମ୍ଭିତ । ଠାକୁରଙ୍କ ପହୁଡ଼ ବେଳ ।

କର ଯୋଡ଼ି ଏତିକି ବେଳେ ଶ୍ରୀଛାମୁରେ ଠିଆ ରହିଲେ କାଳେ ଦୃଷ୍ଟିରେ ପଡ଼ିଯିବି ପରା ! ହେ, ପାର୍ଶଦମାନେ, ତୁମେ ଆସି ମୋ ପାଖେ ପାଖେ ଠିଆ ହୋଇଥାଅ । ଅଦୃଶ୍ୟ ରହି ଦେଖୁଥାଅ ।

ଯଦି ତୁମେ କହିବା କଥା ଠିକ୍ ତା'ହେଲେ ଏଇଠି ପରୀକ୍ଷା ହେଇଯିବ ।

ସେ ଦେଖିବାମାତ୍ରେ ପୁଲକିତ ହେବେ । ଫୁଟିଲା କଦମ୍ବ ପରି ଟାଙ୍କୁରିଯିବ ନନ୍ଦିଘୋଷ । ଆଚ୍ଛନ୍ନ ଆକାଶ କଣ୍ଟକିତ ହୋଇଯିବ ତାରାପୁଞ୍ଜରେ । ...ସେମିତି ବାହୁ ପ୍ରସାରି ସେ କୋଳାଗ୍ରତ କରିନେବେ ଯାହାକୁ ସେ ଅନନ୍ତକାଳ ଅପେକ୍ଷା କରିଛନ୍ତି । କୁଞ୍ଜମୟ ହୋଇଯିବ ପୃଥିବୀ । ସେଇ ମୁହୂର୍ତ୍ତରେ ମଧୁବର୍ଷା ହେବ ଆକାଶର କୋଣ ଅନୁକୋଣରୁ; ମଧୁବାହୀ ହେବ ପବନ; ମଧୁ କ୍ଷରଣ କରିବେ ସିନ୍ଧୁମାନେ ।

ସେତିକିବେଳେ ପଲକ ପକାଇ ନେବ ହେ ପାର୍ଶଦମାନେ, ନିର୍ବାପିତ କରିଦେବ ଅକାଶରୁ ସମସ୍ତ ପ୍ରଦୀପ । ମିଳନର ଏକାନ୍ତ ମୁହୂର୍ତ୍ତରେ ତୁମର ସାକ୍ଷୀ ହେବା ଅବିଧି । ସେଇ ମୁହୂର୍ତ୍ତ ଜାଣି ମୋ ଆତ୍ମା ପାଇଁ ଅନନ୍ତକାଳର ବିସ୍ତାର । ଆଖି ନାହିଁ, କାନ

ନାହିଁ, ଅନ୍ନ ନାହିଁ, ପ୍ରାଣ ନାହିଁ, ମନ ବିଜ୍ଞାନ କିଛି ନାହିଁ, ଦିଗ୍‌ବିଦିଗହୀନ, ଅତୀତ ବର୍ତ୍ତମାନ ଭବିଷ୍ୟତରୁ ଉତ୍ତୀର୍ଣ୍ଣ ଏକମାତ୍ର ସାନ୍ଦ୍ର ନିରବଚ୍ଛିନ୍ନ ସ୍ତବ୍‌ଧଶିହରଣ । ଆନନ୍ଦମ୍ !... ଆନନ୍ଦମ୍ !!

ଆଖି ମେଲି ଦେଖିବ, ସେ ନନ୍ଦିଘୋଷରେ ବିଜେ କରିଥିବେ । ବଡ଼ଦାଣ୍ଡ ଧୂଳିରେ ଏ ମୃଣ୍ମୟ ପିଣ୍ଡଟି ପଡ଼ି ରହିଥିବ । ଜୟଗାନ କରିବ, ହେ ପାର୍ଶଦମାନେ, ସିଦ୍ଧଗନ୍ଧର୍ବଙ୍କୁ ଆବାହନ କରି ଆଣିବ । ଆକାଶରୁ ଦେବତାଙ୍କୁ ଓହ୍ଲାଇ ଆଣିବ । କିଛି ପୁଷ୍ପ ବର୍ଷା କରିବ ଏ ଭୂମି ଉପରେ । କହିବ, କେହି ଜଣେ ବସନ୍ତରାଗରେ ନିରୋଳା ବଂଶୀରେ ମୃଦୁ ଧ୍ୱନି କରିବେ । - ସାବଧାନ ! ଜଗତ୍ ପ୍ରବାହକୁ କମ୍ପିତ କରିବ ନାହିଁ । ନିଦ୍ରିତା ପୃଥିବୀର ସ୍ୱପ୍ନ ଭିତରେ କିଛି ସ୍ୱର ପ୍ରଲେପ ପହଞ୍ଚାଇ ଦେବ ।

ତୁମେ ହିଁ ଏ ସାର୍ଥକ ପିଣ୍ଡଟିକୁ ଟୋଳି ଧରିବ ପ୍ରଭୁଙ୍କ ସମକ୍ଷରେ । ସେ କେଉଁ ଅନନ୍ତ ଅନ୍ତରୀକ୍ଷରୁ ଚାହିଁଥିବେ କି ନ ଚାହିଁଥିବେ । ନିରବ ଯାତ୍ରାରେ ନେଇଯିବ ଏ ଅପରିମେୟ ବଡ଼ଦାଣ୍ଡରୁ ଅଗାଧ ମହୋଦଧି ପର୍ଯ୍ୟନ୍ତ ଏବଂ ତୁମେ ହିଁ ବିସର୍ଜନ କରିଦେବ କିଛି ତୁଳସୀ ମଞ୍ଜରୀ ସହିତ ଏ କୃତାର୍ଥ ପିଣ୍ଡଟିକୁ । ନିଶାର୍ଦ୍ଧ ସମୁଦ୍ରକୁ ଟୋଳି ଦେଲା ବେଳେ କହିବ, "ଏ ଶାଖାରେ ବସିଥିବା ପକ୍ଷୀଟି ଆନମନା ଫଳ ଭୁଞ୍ଜୁଥିଲା ବେଳେ ବି ଅପେକ୍ଷା କରିଥିଲା ଆର ଡାଳରେ ଚାହିଁ ବସିଥିବା ପକ୍ଷୀକୁ !"

...ମୁଁ ପ୍ରସ୍ତୁତ ଚୂଡ଼ାନ୍ତ ପରୀକ୍ଷା ପାଇଁ, ହେ ପାର୍ଶଦମାନେ, ମୋର ଧୃଷ୍ଟତା, ମୋର ବିବଶତା, ମୋର ପ୍ରଗଲ୍‌ଭତାକୁ ଘେନା କରିବ ନାହିଁ । ମୁଁ ଜାଣେ, ତୁମ ବାକ୍ୟ ପ୍ରମାଣିତ ହେଉ ଅଥବା ନ ହେଉ ମୋତେ ତ ତ୍ରାହି ମିଳିଯିବ ସେ ଦୁଃସହ ଜ୍ୱାଳାରୁ, ଅନନ୍ତ ପତୀକ୍ଷାରୁ, ବିଡ଼ମ୍ବନାରୁ !

ମୋ ଆଖିରେ ଶ୍ରାବଣ ! ତୁମର ଜାଜ୍ୱଲ୍ୟମାନ ରୂପ ଝଲମଲ ବିମ୍ବ ପରି କମ୍ପିତ ହେଉଛି । ମୋର ମତିଭ୍ରମ ହେଉଛି । ମୁହୂର୍ତ୍ତେ ମୁହୂର୍ତ୍ତେ ତୁମେ ତାଙ୍କ ଭଳି ଦିଶି ଯାଉଛ କାହିଁକି ? - ହେ ପରମ କାରୁଣିକ ଜ୍ୟୋତିଃପୁଞ୍ଜ ! ତୁମେ କ'ଣ ତା'ହେଲେ ସେଇ ? - ନିଜ ବାର୍ତ୍ତା ଦେବାକୁ ଏମିତି ରୂପରେ ସ୍ୱୟଂ ସେ ହିଁ ଆସିଥିଲେ ? ଉତ୍ତର ଦିଅ, ହେ ଅପସୃୟମାଣ, ବିଲୀୟମାନ ଦିବ୍ୟରୂପ ! ଉତ୍ତର ଦିଅ !!

⊙

ବେଳେ ବେଳେ ବନ୍ଦୀଶାଳାରେ ମହାପୁରୁଷ ଜନ୍ମଲାଭ କଲାପରି ସାହିତ୍ୟ-ସୃଷ୍ଟି ତା'ର ସ୍ରଷ୍ଟାକୁ ଅତିକ୍ରମ କରିଯାଏ । ନିମିତ୍ତ ଭଳି ଉଭୟ ଲେଖକ ଏବଂ ଲେଖନୀକୁ ବ୍ୟବହାର କରି ସୂକ୍ଷ୍ମ ଭୂମିରୁ ଯେ ଅବତରଣ କରେ ସେ ସୃଷ୍ଟି ତା'ର ସ୍ରଷ୍ଟାଠାରୁ ବୃହତ୍ତର, ଆୟତନରେ ଏବଂ ଗଭୀରତାରେ । ସେ ସ୍ୱୟଂ ତା' ସୃଷ୍ଟି ପାଇଁ ନିମିତ୍ତ ଏବଂ ଉପାଦାନ । ନିଜର ଗୋଟିଏ ମାତ୍ର ଅଂଶକୁ ସଂଜୀବିତ କରି ତାକୁ ସ୍ୱତନ୍ତ୍ର ସତ୍ତାର ସ୍ୱୀକୃତି ଦେବା ସ୍ରଷ୍ଟାର ଅନନ୍ୟ ଅଧିକାର । କିନ୍ତୁ ଏ ନିୟମର ବ୍ୟତିକ୍ରମ ମଧ୍ୟ ହୁଏ । ଶୂନ୍ୟଭୂମିର ପକ୍ଷୀମାନେ ହଠାତ୍ କୌଣସି ଡାଳ ଉପରକୁ ଓହ୍ଲେଇ ଆସନ୍ତି ସ୍ୱଇଚ୍ଛାରେ । ସେ ଗଛଟି ସେଥିପାଇଁ ନିଜକୁ ଧନ୍ୟ ମନେକରେ, ପୂର୍ଣ୍ଣ ମନେକରେ । ତା ଡାଳରେ ଫଳଟିଏ ଓହଳିବା ଯାହା ପକ୍ଷୀଟିଏ ବସିବା ତାହା ନୁହେଁ । ଅନ୍ୟମାନେ ପକ୍ଷୀଟିକୁ ତା' ଡାଳରେ ଆବିଷ୍କାର କରନ୍ତି, ଚିହ୍ନଟ କରନ୍ତି । ସେ କିନ୍ତୁ ବିନୟର ସହିତ ସତ୍ୟ ସ୍ୱୀକାର କରେ । ପ୍ରତି ବର୍ଷ ରଥଯାତ୍ରା ବେଳକୁ ଶ୍ରୀଜୀଉଙ୍କ ମୁଦ୍ରାଙ୍କିତ ଆଦେଶ ନେଇ ଆସିଲା ଭଳି କେହି ଜଣେ ଆସି ମୋଠାରୁ ଖଣ୍ଡିଏ ରଚନା ଆଦାୟ କରି ନେବାର ନଜିର ମୋ ପାଖରେ ଅଛି । ସେମାନେ ଯେଉଁଭଳି ସ୍ନେହାଧିକାର ଜାହିର କରିଛନ୍ତି ମୁଁ ଜାଣେ । ଅନୁକ୍ତ ହେଲେ ମଧ୍ୟ ସେ ଆଦେଶ ଦୁର୍ଲଂଘ୍ୟ ବୋଲି ମଧ୍ୟ ଜାଣେ । ମୁଁ ସେ ଆଦେଶ ପାଳନ କରିଛି ମାତ୍ର । ଏଣୁ ସାଧାରଣ ଅର୍ଥରେ ମୁଁ ନିଜକୁ ଏ ଲେଖାଗୁଡ଼ିକର ସ୍ରଷ୍ଟା ବୋଲି କହିବାକୁ ଦ୍ୱିଧାବୋଧ କରୁଛି । ସେଥିପାଇଁ ମୋର ହୁଏତ କିଛି ପ୍ରସ୍ତୁତି ଥାଇପାରେ କିନ୍ତୁ ଏଭଳି ରଚନା ତ ମୋର ଆଉ ନାହିଁ ।

ଏ ସାତଟିଯାକ ରଚନାର କ୍ରମାନ୍ୱୟତା ବିଷୟରେ ମୁଁ ନିଜେ ପ୍ରଥମ ତିନିବର୍ଷ କାଳ ସଚେତନ ନ ଥିଲି । ଚତୁର୍ଥ ବର୍ଷ ଲେଖିଲା ବେଳେ ମୋତେ 'ରଥ ସପ୍ତକ'ର ସମସ୍ତ ଯୋଜନାବିନ୍ୟାସ ହଠାତ୍ ଉପଲବ୍ଧ ହେଲା । - ପ୍ରାୟ ଏଇଭଳି -

ପ୍ରତ୍ୟେକ ଭକ୍ତ ପ୍ରାଣର ପ୍ରଥମ ଆକୁତି ହେଲା- "ମୁଁ କ୍ଷେତ୍ର ଯିବି"। ସେଇ ସାତ୍ୱିକ ଆବେଗରେ ପ୍ରତ୍ୟେକେ ଟାଣି ହୋଇ ଆସି ବଡ଼ ଦାଣ୍ଡରେ ସମାବିଷ୍ଟ ହୁଅନ୍ତି । ସେଇଠି ଦେଶ ଦେଶାନ୍ତର, କାଳ କାଳାନ୍ତରରୁ ଆସିଥିବା ଭକ୍ତମାନେ ପରସ୍ପରକୁ ନିବିଡ଼ ଆତ୍ମୀୟତାରେ ଗ୍ରହଣ କରନ୍ତି । ଏକୁ ଆରେକ ଡକାହକା ହୁଅନ୍ତି- "ହୋ, ଭଗତେ !" ଏ ସମସ୍ତଙ୍କର ସାମୂହିକ ଆବାହନରେ ପ୍ରଭୁଙ୍କ ସିଂହାସନ ଟଳେ । ସେ ଅଙ୍ଗୀକାର କରନ୍ତି ଅବତରଣ ଯାତ୍ରାକୁ । "ପ୍ରଭୁ ବିଜେ" ହୁଅନ୍ତି ଘୋଷଯାତ୍ରା ପାଇଁ । ରଥାରୂଢ଼ ହୋଇ ସମାଗତ ଭକ୍ତଜନଙ୍କର ନୟନମନ ତୃପ୍ତ କଲା ପରେ ଯାତ୍ରାକୁ ସ୍ୱୀକାର କରିଥିବାରୁ ନୀଳାଚଳରୁ 'ରଥ ପ୍ରସ୍ଥାନ' ହୁଏ ଶରଧାବାଲି ଯାଏଁ । ଚେତନାର ଶୀର୍ଷତମ ବିନ୍ଦୁରୁ ନିମ୍ନଚେତନା ପର୍ଯ୍ୟନ୍ତ କୃପା ଅବତରଣ କରେ । ଗୁଣ୍ଡିଚାଯାତ ପାଇଁ ଗୁଣ୍ଡିଚା ମନ୍ଦିରରେ ଠାକୁରେ ରହଣି କରନ୍ତି । ସେଠି କିନ୍ତୁ ମନ ରୁଚେ ନାହିଁ । ନୀଳାଚଳ ଫେରିଯିବାକୁ ସଜ ହୁଅନ୍ତି । ରଥ ଦକ୍ଷିଣମୋଡ଼ ହୁଏ । ପଛରେ ଯେ ପଡ଼ିରହେ ସେ ସେଇ ବିଡ଼ମ୍ବିତ ବିଶ୍ୱାବସୁର ଆତ୍ମା । ଚୈତନ୍ୟପୁରୁଷ ଛାଡ଼ିଗଲା ପରେ ପଡ଼ିରହେ କେବଳ ଜଡ଼ପିଣ୍ଡ । "ବାହୁଡ଼ା ବିଚ୍ଛେଦ" ହୁଏ । ଯାତ୍ରାସାରି ପ୍ରଭୁ ଅନ୍ତର୍ଧାମକୁ ବିଜେ ହେବେ; କିନ୍ତୁ ଠାକୁରାଣୀଙ୍କ ଆଜ୍ଞା ନାହିଁ । ବାହ୍ୟତଃ ଦାମ୍ପତ୍ୟ କଳହ ପରି ଦିଶୁଥିବା ଏ ଅପୂର୍ବ ମଧୁର ରସ ହେଉଛି ଅଖଣ୍ଡୈକ ଅଦ୍ୱୈତ ଭୂମିରେ ଦ୍ୱୈତ ମାଧୁର୍ଯ୍ୟ; ଅଚିନ୍ତ୍ୟ ଭେଦାଭେଦର ମଧୁର ଲୀଳା । "ମଧୁରାଧିପତେ" ପରିଚୟ ଦେଲାପରେ ଶ୍ରୀମନ୍ଦିରକୁ ବିଜେ ହୁଅନ୍ତି । ଏହିପରି ଘୋଷଯାତ୍ରା ସମ୍ପୂର୍ଣ୍ଣ ହୁଏ । ରତ୍ନସିଂହାସନ ମଣ୍ଡନ କରନ୍ତି ନୀଳାଦ୍ରିନାଥ । ପୁନର୍ବାର ଯାଥବିଧି ଶ୍ରୀମନ୍ଦିରର ମହିମା ପ୍ରତିଷ୍ଠା ହୁଏ । ସନ୍ତୁଷ୍ଟ ଭକ୍ତ କରପତ୍ର ଯୋଡ଼ି କୃତକୃତ୍ୟତା ପ୍ରକାଶ କରେ, "ଠାକୁର ଭଲେ ବିରାଜୋ ଜୀ ।"

ଏଇଭଳି ସାତବର୍ଷରେ ଘୋଷଯାତ୍ରାର ପୁଣ୍ୟ ତିଥିରେ ଲେଖା ହୁଏ ସାତଟି ରଚନା । ଏଗୁଡ଼ିକ ଠାକୁରଙ୍କ ରଥଯାତ୍ରାର ରଜ୍ଜୁରେ ଗ୍ରଥିତ 'ସୂତ୍ରେ ମଣି ଗଣାଇବ'। କୌଣସି ଗୋଟିକୁ ଅନ୍ୟଟିରୁ ବିଚ୍ଛିନ୍ନ କରି ହେବନାହିଁ; ସ୍ଥାନାନ୍ତରିତ କରି ହେବ

ନାହିଁ । ସେଥିରେ କ୍ରମାନ୍ୱୟତା ବ୍ୟାହତ ହେବ; ସାମୂହିକ ବକ୍ତବ୍ୟ ଖଣ୍ଡିତ ହେବ । ଏଣୁ ପ୍ରତ୍ୟେକ ରଚନାକୁ ସ୍ୱସ୍ଥାନରେ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦେଇ ଏ ସାତଟିଯାକ ଏଭଳି ଏକତ୍ରିତ ହେଲେ ହିଁ ପୂର୍ଣ୍ଣତା ପ୍ରାପ୍ତ ହେଉଛନ୍ତି । ସେଥିପାଇଁ ମୋର ଅନ୍ୟ ସଂକଳନରେ ସେଥିରୁ ତିନୋଟି ଆଗରୁ ପ୍ରକାଶିତ ହୋଇଥିଲେ ସୁଦ୍ଧା 'ରଥ ସପ୍ତକ' ସେ ସମସ୍ତଙ୍କୁ ଏଭଳି ଏକତ୍ର କରିବାର ଅନିବାର୍ଯ୍ୟତା ଥିଲା । ଜଗଦୀଶ୍ୱରଙ୍କ ଇଚ୍ଛାରେ ତାହା ସମ୍ପନ୍ନ ହୋଇଛି ।

ତା' ପରେ ଆଉ ଛ' ବର୍ଷ ରଥଯାତ୍ରା ଦିନ ପ୍ରଭୁଙ୍କ ଛ'ଟି ଲୀଳା ପ୍ରସଙ୍ଗ ରଚିତ ହୋଇଛି । ସେ ସମସ୍ତ ମଧ୍ୟ ଏଥି ସହିତ ଗ୍ରଥିତ ହୋଇଛି ।

ପ୍ରଭୁଙ୍କୁ ନିବେଦିତ ହେଲା ପରେ ଏ ସଂକଳନଟି ଏହି ରୂପରେ ଉତ୍କଳ ଭାରତୀଙ୍କୁ ସମର୍ପଣ କରୁଛି, ଭକ୍ତ ଜନ ଓ ଗୁଣଗ୍ରାହୀ ପାଠକଙ୍କୁ ଅର୍ପଣ କରୁଛି । ଘେନା ହେଲେ ନିଜକୁ କୃତାର୍ଥ ମଣିବି ।

- ଚନ୍ଦ୍ରଶେଖର ରଥ

ନମୋ ନିଶ୍ଚିହ୍ନଲିଙ୍ଗାୟ
ନମୋ ପ୍ରଣବରୂପିଣେ ।
ଯାତ୍ରାୟାଃ ଲୀଳାୟତୀବ
ନ ଏକଦେକଂ ବ୍ରହ୍ମଣେ ॥
ଜାଗ୍ରତୋ ନିର୍ନିମେଷାୟ
ଜଗତଃ ସାକ୍ଷୀରୂପିଣେ ।
ଅନନ୍ତ ଶୋଭମାନାୟ
ଅଖଣ୍ଡାନନ୍ଦ ହେତବେ ॥

ହେ ମୋର ପରାଭୂତ ସ୍ନାୟୁମଣ୍ଡଳ । ଆଉ କିଛି ସମୟ ଏ ବସ୍ତୁ ତୋରଣକୁ ତୋଳିଧର । ଶିଥିଳ ଅଙ୍ଗଗୁଡ଼ିକରେ ମନ୍ଦୀଭୂତ ରକ୍ତପ୍ରବାହ, ଆଉ କିଛି କାଳ ପ୍ରବାହିତ ହୁଅ । ନଇଁଆସୁଥିବା ଘନ ତମିସ୍ରାର ପଲକଯୋଡ଼ିକୁ ତୋଳିଧର ଭଗତେ, ଏ ଚକ୍ଷୁଗୋଲକକୁ କିଛି ଜ୍ୟୋତି ଦାନକର । ମୁଁ ଦେଖେ ସେ କଲ୍ୟାଣତମ ପୁରୁଷଙ୍କର ରୂପ ।

ମୁହୂର୍ତ୍ତକରେ ମୋତେ କହିଦିଅ, ଭଗତେ, ଏ ବିଶାଳ ମନ୍ଥନର କେନ୍ଦ୍ରରେ ସେ କିଏ ? ସେ କ'ଣ ସେଇ ? ସେଇ ବିସ୍ମୟ ? ଦୟାକର ଭଗତେ, 'ହଁ' ବୋଲି କହ ନାହିଁ, ସମୁଦ୍ରରେ ବୁଡ଼ିଯିବି । 'ନା' ବୋଲି କହନାହିଁ ଭଗତେ, ନିର୍ବାତ ଶୂନ୍ୟରେ ଛାତି ଫାଟିଯିବ । ଡୁନିପଡ଼ିଯାଅ । ଡୁନିପଡ଼ିଯାଅ । ।

(ହୋ ଭଗତେ ।)

ଚନ୍ଦ୍ରଶେଖର ରଥ ବହୁମାନ୍ୟ ଯଶସ୍ୱୀ ସାହିତ୍ୟିକ, ସେ ଆଉକିଛି ନ ଲେଖି କେବଳ 'ରଥ ସପ୍ତକ' ଲେଖିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଅମର ହୋଇଥାନ୍ତେ ।

- ପ୍ରକାଶକ

ମହାବୀର ପ୍ରକାଶନ
ମ୍ୟୁନିସିପାଲ ମାର୍କେଟ କମ୍ପ୍ଲେକ୍ସ, ପୁରୁଣା ବସଷ୍ଟାଣ୍ଡ ପାଖ, ଭୁବନେଶ୍ୱର-୯, ଫୋନ୍ : ୯୪୩୯୪୭୭୯୯୯

ISBN 81-88263-00-1
9 788188 263004